ଦାଦା ଭଗବାନ ପ୍ରରୂପିତ

# ଭାବନା ସୁଧାରେ ଜନ୍ମୋଜନ୍ମ

(ନଅ କଲମ - ସାରାଂଶ, ସବୁ ଶାସ୍ତ୍ରର)



Oriya

**ପ୍ରକାଶକ :** ଶ୍ରୀ ଅଜିତ୍ ସି. ପଟେଲ
ଦାଦା ଭଗବାନ ଆରାଧନା ଟ୍ରଷ୍ଟ
'ଦାଦା ଦର୍ଶନ', ୫, ମମତାପାର୍କ ସୋସାଇଟୀ,
ନବଗୁଜରାଟ କଲେଜ ପଛ, ଉସ୍ମାନପୁରା,
ଅହମଦାବାଦ - ୩୮୦୦୧୪, ଗୁଜରାଟ
ଫୋନ୍ - (୦୭୯) ୨୭୫୪୦୪୦୮



**ପ୍ରଥମ ସଂସ୍କରଣ :** ୧୦୦୦ ଖଣ୍ଡ ନଭେମ୍ବର ୨୦୧୯

**ଭାବ ମୂଲ୍ୟ :** 'ପରମ ବିନୟ' ଏବଂ 'ମୁଁ କିଛି ମଧ୍ୟ ଜାଣି ନାହିଁ', ଏହି ଭାବ !

**ଦ୍ରବ୍ୟ ମୂଲ୍ୟ :** ୨୦ ଟଙ୍କା

**ମୁଦ୍ରକ :** ଅମ୍ବା ଅଫ୍‌ସେଟ୍
B-99, ଇଲେକ୍ଟ୍ରୋନିକ୍ସ GIDC,
K-6 ରୋଡ଼୍, ସେକ୍ଟର-25, ଗାନ୍ଧୀନଗର-୩୮୨୦୪୪
ଫୋନ୍ - (୦୭୯) ୩୯୮୩୦୩୪୧

# ତ୍ରିମନ୍ତ୍ର




ନମୋ ଅରିହଂତାଣଂ
ନମୋ ସିଦ୍ଧାଣଂ
ନମୋ ଆୟରିୟାଣଂ
ନମୋ ଉବଜ୍ଝାୟାଣଂ
ନମୋ ଲୋଏ ସବ୍ୱସାହୁଣଂ
ଏସୋ ପଞ୍ଚ ନମୁକ୍କାରୋ,
ସବ୍ୱ ପାବପ୍ପଣାସଣୋ
ମଙ୍ଗଲାଣଂ ଚ ସବ୍ୱେସିଂ,
ପଢମଂ ହବଇ ମଙ୍ଗଲମ୍ ।। ୧ ।।
ଓଁ ନମୋ ଭଗବତେ ବାସୁଦେବାୟ ।।୨।।
ଓଁ ନମଃ ଶିବାୟ ।। ୩ ।।
।। ଜୟ ସଚ୍ଚିଦାନନ୍ଦ ।।







# 'ଦାଦା ଭଗବାନ' କିଏ ?

ଜୁନ୍ ୧୯୫୮ରେ ଏକ ସନ୍ଧ୍ୟା, ସମୟ ପାଖାପାଖି ଛ'ଟା, ଭିଡ଼ରେ ଭରା ସୁରଟ ସହରର ରେଲୱେ ଷ୍ଟେସନ୍, ପ୍ଲାଟ୍‌ଫର୍ମ ନମ୍ବର ୩ର ବେଞ୍ଚ ଉପରେ ବସିଥିବା ଶ୍ରୀ ଅମ୍ବାଲାଲ୍ ମୁଲ୍‌ଜୀଭାଇ ପଟେଲ ରୂପୀ ଦେହମନ୍ଦିରରେ ପ୍ରାକୃତିକ ରୀତିରେ, ଅକ୍ରମ ରୂପରେ, କେତେ ଜନ୍ମରୁ ବ୍ୟକ୍ତ ହେବାପାଇଁ ଆତୁର 'ଦାଦା ଭଗବାନ' ପୂର୍ଣ୍ଣ ରୂପରେ ପ୍ରକଟ ହେଲେ । ଏବଂ ପ୍ରକୃତି ସର୍ଜିତ କଲା ଅଧ୍ୟାତ୍ମର ଅଦ୍ଭୁତ ଆଶ୍ଚର୍ଯ୍ୟ । ଏକ ଘଣ୍ଟାରେ ତାଙ୍କୁ ବିଶ୍ୱ ଦର୍ଶନ ହେଲା । 'ମୁଁ କିଏ ? ଭଗବାନ କିଏ ? ଜଗତ କିଏ ଚଲାଉଛି ? କର୍ମ କ'ଣ ? ମୁକ୍ତି କ'ଣ ?' ଇତ୍ୟାଦି ଜଗତର ସମସ୍ତ ଆଧ୍ୟାତ୍ମିକ ପ୍ରଶ୍ନର ସମ୍ପୂର୍ଣ୍ଣ ରହସ୍ୟ ପ୍ରକଟ ହେଲା । ଏହିପରି ପ୍ରକୃତି, ବିଶ୍ୱ ସମ୍ମୁଖରେ ଏକ ଅଦ୍ୱିତୀୟ ପୂର୍ଣ୍ଣ ଦର୍ଶନ ପ୍ରସ୍ତୁତ କଲା ଏବଂ ତାହାର ମାଧ୍ୟମ ହେଲେ ଶ୍ରୀ ଅମ୍ବାଲାଲ୍ ମୂଲ୍‌ଜୀଭାଇ ପଟେଲ, ଯିଏ ଗୁଜରାଟର ଚରୋତର କ୍ଷେତ୍ରର ଭାଦରଣ ଗାଁ'ର ପାଟୀଦାର, କଣ୍ଟ୍ରାକ୍ଟ ବ୍ୟବସାୟ କରିବାବାଲା, ତଥାପି ପୂର୍ଣ୍ଣ ରୂପରେ ବୀତରାଗ ପୁରୁଷ !

'ବ୍ୟାପାରରେ ଧର୍ମ ରହିବା ଉଚିତ, ଧର୍ମରେ ବ୍ୟାପାର ନୁହେଁ', ଏହି ସିଦ୍ଧାନ୍ତ ସହ ସେ ସାରା ଜୀବନ ବିତାଇଲେ । ଜୀବନରେ କେବେ ମଧ୍ୟ ସେ କାହାରିଠାରୁ ପଇସା ନେଇ ନାହାନ୍ତି, ବରଂ ନିଜ ରୋଜଗାରରୁ ଭକ୍ତମାନଙ୍କୁ ଯାତ୍ରା କରାଉଥିଲେ ।

ତାଙ୍କୁ ଯେପରି ପ୍ରାପ୍ତ ହେଲା, ସେହିପରି କେବଳ ଦୁଇ ଘଣ୍ଟାରେ ଅନ୍ୟ ମୁମୁକ୍ଷୁମାନଙ୍କୁ ମଧ୍ୟ ସେ ଆତ୍ମଜ୍ଞାନର ପ୍ରାପ୍ତି କରାଉଥିଲେ, ତାଙ୍କର ଅଦ୍ଭୁତ ସିଦ୍ଧ ହୋଇଥିବା ଜ୍ଞାନପ୍ରୟୋଗ ଦ୍ୱାରା । ତାହାକୁ ଅକ୍ରମ ମାର୍ଗ କହିଲେ । ଅକ୍ରମ, ଅର୍ଥାତ୍ ବିନା କ୍ରମରେ ଏବଂ କ୍ରମ ଅର୍ଥାତ୍ ସିଢ଼ି ପରେ ସିଢ଼ି, କ୍ରମାନୁସାରେ ଉପରକୁ ଚଢ଼ିବା । ଅକ୍ରମ ଅର୍ଥାତ୍ ଲିଫ୍ଟ ମାର୍ଗ, ସର୍ଟ କଟ୍ ।

ସେ ନିଜେ ପ୍ରତ୍ୟେକଙ୍କୁ 'ଦାଦା ଭଗବାନ କିଏ ?'ର ରହସ୍ୟ ବତାଇବାକୁ ଯାଇ କହୁଥିଲେ ଯେ, ''ଏ ଯିଏ ଆପଣଙ୍କୁ ଦେଖାଯାଉଛନ୍ତି ସେ ଦାଦା ଭଗବାନ ନୁହଁନ୍ତି, ସେ ତ 'ଏ.ଏମ୍. ପଟେଲ' ଅଟେ । ମୁଁ ଜ୍ଞାନୀପୁରୁଷ ଅଟେ ଏବଂ ଭିତରେ ଯିଏ ପ୍ରକଟ ହୋଇଛନ୍ତି, ସେ 'ଦାଦା ଭଗବାନ' ଅଟନ୍ତି । ଦାଦା ଭଗବାନ ତ' ଚଉଦ ଲୋକର ନାଥ ଅଟନ୍ତି । ସେ ଆପଣଙ୍କ ଭିତରେ ମଧ୍ୟ ଅଛନ୍ତି, ସମସ୍ତଙ୍କ ଭିତରେ ଅଛନ୍ତି । ଆପଣଙ୍କ ଭିତରେ ଅବ୍ୟକ୍ତ ରୂପରେ ଅଛନ୍ତି ଏବଂ 'ଏଠାରେ' ମୋ ଭିତରେ ସମ୍ପୂର୍ଣ୍ଣ ରୂପରେ ବ୍ୟକ୍ତ ହୋଇଛନ୍ତି । ଦାଦା ଭଗବାନଙ୍କୁ ମୁଁ ମଧ୍ୟ ନମସ୍କାର କରେ ।''

# ଆତ୍ମଜ୍ଞାନ ପ୍ରାପ୍ତି ପାଇଁ ପ୍ରତ୍ୟକ୍ଷ ଲିଙ୍କ୍

"ମୁଁ ତ କିଛି ଲୋକଙ୍କୁ ନିଜ ହାତରେ ସିଦ୍ଧି ପ୍ରଦାନ କରିବି । ପରେ ଅନୁଗାମୀ ଦରକାର କି ନାହିଁ ? ପରେ ଲୋକଙ୍କୁ ମାର୍ଗ ତ ଦରକାର ନା ?"

**– ଦାଦାଶ୍ରୀ**

ପରମ ପୂଜ୍ୟ ଦାଦାଶ୍ରୀ ଗାଁ'-ଗାଁ', ଦେଶ-ବିଦେଶ ପରିଭ୍ରମଣ କରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି କରାଉଥିଲେ । ସେ ନିଜର ଜୀବନକାଳ ମଧ୍ୟରେ ପୂଜ୍ୟ ଡା. ନୀରୂବେନ ଅମୀନ(ନୀରୂମାଁ)ଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଇବାର ଜ୍ଞାନସିଦ୍ଧି ପ୍ରଦାନ କରିଥିଲେ । ଦାଦାଶ୍ରୀଙ୍କ ଦେହବିଲୟ ପରେ ନୀରୂମା ସେହିପରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି, ନିମିତ୍ତ ଭାବରେ କରାଉଥିଲେ । ପୂଜ୍ୟ ଦୀପକଭାଇ ଦେଶାଇଙ୍କୁ ଦାଦାଶ୍ରୀ ସତ୍‌ସଙ୍ଗ କରିବା ପାଇଁ ସିଦ୍ଧି ପ୍ରଦାନ କରିଥିଲେ । ନୀରୂମାଁଙ୍କ ଉପସ୍ଥିତିରେ ହିଁ ତାଙ୍କର ଆର୍ଶୀବାଦ ଦ୍ୱାରା ପୂଜ୍ୟ ଦୀପକଭାଇ ଦେଶ-ବିଦେଶରେ ଅନେକ ଜାଗାକୁ ଯାଇ ମୁମୁକ୍ଷୁମାନଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଉଥିଲେ, ଯାହା ନୀରୂମାଁଙ୍କ ଦେହବିଲୟ ପରେ ଆଜି ମଧ୍ୟ ଚାଲୁଅଛି । ଏହି ଆତ୍ମଜ୍ଞାନ ପ୍ରାପ୍ତି ପରେ ହଜାର ହଜାର ମୁମୁକ୍ଷୁ ସଂସାରରେ ରହି, ନିଜର ସାଂସାରିକ ଦାୟିତ୍ୱ ବହନ କରି ମଧ୍ୟ ମୁକ୍ତ ରହି ଆତ୍ମରମଣତାର ଅନୁଭବ କରୁଛନ୍ତି ।

ଗ୍ରନ୍ଥରେ ମୁଦ୍ରିତ ବାଣୀ ମୋକ୍ଷାର୍ଥୀମାନଙ୍କୁ ମାର୍ଗଦର୍ଶନ ପାଇଁ ଅତ୍ୟନ୍ତ ଉପଯୋଗୀ ସିଦ୍ଧ ହେବ, କିନ୍ତୁ ମୋକ୍ଷପ୍ରାପ୍ତି ପାଇଁ ଆତ୍ମଜ୍ଞାନ ପ୍ରାପ୍ତ କରିବା ଆବଶ୍ୟକ ଅଟେ । ଅକ୍ରମ ମାର୍ଗ ଦ୍ୱାରା ଆତ୍ମଜ୍ଞାନ ପ୍ରାପ୍ତିର ମାର୍ଗ ଆଜି ମଧ୍ୟ ଖୋଲା ଅଛି । ଯେପରି ପ୍ରଜ୍ୱଳିତ ଦୀପ ହିଁ ଅନ୍ୟ ଦୀପକୁ ପ୍ରଜ୍ୱଳିତ କରିପାରେ, ସେହିପରି ପ୍ରତ୍ୟକ୍ଷ ଆତ୍ମଜ୍ଞାନୀଙ୍କଠାରୁ ଆତ୍ମଜ୍ଞାନ ପ୍ରାପ୍ତ କରି ହିଁ ସ୍ୱୟଂର ଆତ୍ମା ଜାଗୃତ ହୋଇପାରେ ।

# ନିବେଦନ

ଆତ୍ମବିଜ୍ଞାନୀ ଶ୍ରୀ ଅମ୍ବାଲାଲ ମୂଳ୍‌ଜୀଭାଇ ପଟେଲ, ଯାହାଙ୍କୁ ଲୋକେ 'ଦାଦା ଭଗବାନ' ନାମରେ ମଧ୍ୟ ଜାଣନ୍ତି, ତାଙ୍କ ଶ୍ରୀମୁଖରୁ ଅଧ୍ୟାତ୍ମ ତଥା ବ୍ୟବହାର ଜ୍ଞାନ ସମ୍ବନ୍ଧୀୟ ଯେଉଁ ବାଣୀ ବାହାରିଛି, ସେସବୁକୁ ରେକର୍ଡ କରି, ସଙ୍କଳନ ତଥା ସମ୍ପାଦନ କରି ପୁସ୍ତକ ରୂପରେ ପ୍ରକାଶିତ କରାଯାଉଛି ।

ପ୍ରସ୍ତୁତ ଅନୁବାଦରେ ଏହା ବିଶେଷ ଧ୍ୟାନ ରଖାଯାଇଛି ଯେ, ପାଠକଙ୍କୁ ଦାଦାଶ୍ରୀଙ୍କର ହିଁ ବାଣୀ ଶୁଣାଯାଉଛି, ଏପରି ଅନୁଭବ ହେଉ, ଯେଉଁ କାରଣରୁ ବୋଧହୁଏ କିଛି ଜାଗାରେ ଅନୁବାଦର ବାକ୍ୟ ରଚନା ଓଡ଼ିଆ ବ୍ୟାକରଣ ଅନୁସାରେ ତ୍ରୁଟିପୂର୍ଣ୍ଣ ଲାଗିପାରେ, କିନ୍ତୁ ଯଦି ଏଠାରେ ଆଶୟ(ହେତୁ)କୁ ବୁଝି ପଢ଼ାଯିବ, ତେବେ ଅଧିକ ଲାଭକାରୀ ହେବ ।

ଜ୍ଞାନୀଙ୍କ ବାଣୀକୁ ଓଡ଼ିଆ ଭାଷାରେ ଯଥାର୍ଥ ରୂପରେ ଅନୁବାଦ କରିବାର ପ୍ରୟାସ କରାଯାଇଛି । ପ୍ରସ୍ତୁତ ପୁସ୍ତକରେ ଅନେକ ଜାଗାରେ ବନ୍ଧନୀରେ ଦର୍ଶାଯାଇଥିବା ଶବ୍ଦ ବା ବାକ୍ୟ ପରମପୂଜ୍ୟ ଦାଦାଶ୍ରୀଙ୍କ ଦ୍ୱାରା କୁହାଯାଇଥିବା ବାକ୍ୟକୁ ଅଧିକ ସ୍ପଷ୍ଟତାପୂର୍ବକ ବୁଝାଇବା ହେତୁ ଲେଖାଯାଇଛି । ଯେବେକି କିଛି ଜାଗାରେ ଇଂରାଜୀ ଶବ୍ଦକୁ ଓଡ଼ିଆ ଅର୍ଥରୂପରେ ରଖାଯାଇଛି । ଦାଦାଶ୍ରୀଙ୍କ ଶ୍ରୀମୁଖରୁ ବାହାରିଥିବା କିଛି ଗୁଜରାଟୀ ଶବ୍ଦ ଯେମିତିକୁ ସେମିତି *ଇଟାଲିକ୍ସ* ରେ ରଖାଯାଇଛି, କାରଣ ସେ ଶବ୍ଦଗୁଡ଼ିକ ପାଇଁ ଓଡ଼ିଆରେ ଏପରି କିଛି ଶବ୍ଦ ନାହିଁ, ଯାହା ତାହାର ପୂର୍ଣ୍ଣ ଅର୍ଥ ଦେଇପାରିବ । କିନ୍ତୁ ସେହି ଶବ୍ଦର ସମାନାର୍ଥବୋଧକ ଶବ୍ଦ ବନ୍ଧନୀରେ ଏବଂ ପୁସ୍ତକର ଶେଷରେ ମଧ୍ୟ ଦିଆଯାଇଛି ।

ଅନୁବାଦଜନିତ ତ୍ରୁଟି ପାଇଁ ଆପଣଙ୍କ ପାଖରେ କ୍ଷମାପ୍ରାର୍ଥୀ ଅଟୁ ।



## ସମ୍ପାଦକୀୟ

ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଘରେ ହେଉ କି ବାହାରେ, ଲୋକଙ୍କ ମୁହଁରୁ ଏପରି ଶୁଣିବାକୁ ମିଳେ ଯେ ଆମେ ଏପରି କରିବାକୁ ଚାହୁଁ ନାହୁଁ ତଥାପି ଏପରି ହୋଇଯାଉଛି । ଏପରି କରିବାକୁ ଚାହୁଁଛୁ କିନ୍ତୁ ଏପରି ହେଉନାହିଁ । ଭାବନା ପ୍ରବଳ ଅଛି, ମଜଭୁତ *ନିଶ୍ଚୟ* ଅଛି, ପ୍ରୟାସ ମଧ୍ୟ କରୁଛୁ, ତଥାପି ହେଉନାହିଁ ।

ସବୁ ଧର୍ମୋପଦେଶକଙ୍କର ସାଧକମାନଙ୍କ ପାଇଁ ସର୍ବଦା ଏହି ଅଭିଯୋଗ ରହେ ଯେ, ଆମେ ଯାହା କହୁଛୁ, ତାହାକୁ ତୁମେ ଆତ୍ମସାତ କରୁନାହଁ । ଶ୍ରୋତା ବି ହତାଶ ହୋଇ ଆକୁଳିତ ହୁଅନ୍ତି ଯେ ଧର୍ମ ସମ୍ବନ୍ଧୀ ଏତେ କିଛି କରିବା ପରେ ମଧ୍ୟ ଆମ ଆଚରଣରେ କାହିଁକି ଆସୁନାହିଁ ? ଏହାର ରହସ୍ୟ କ'ଣ ? କେଉଁଠି ଅସୁବିଧା ହେଉଛି ? କେଉଁ ପ୍ରକାରେ ଏହି ଭୁଲର ନିବାରଣ ହୋଇପାରିବ ?

ପରମପୂଜ୍ୟ ଦାଦା ଭଗବାନ (ଦାଦାଶ୍ରୀ) ଏହି କାଳର ମନୁଷ୍ୟଙ୍କ କାପାସିଟୀ (କ୍ଷମତା)କୁ ଦେଖି, ତାଙ୍କ ଯୋଗ୍ୟତା ଅନୁସାରେ ଏହାର ସମାଧାନ ଏକ ନୂତନ ଅଭିଗମରେ, ସମ୍ପୂର୍ଣ୍ଣ ବୈଜ୍ଞାନିକ ଢଙ୍ଗରେ ପ୍ରସ୍ତୁତ କରିଛନ୍ତି । ଦାଦାଶ୍ରୀ ବୈଜ୍ଞାନିକ ଶୈଳୀରେ ସ୍ପଷ୍ଟୀକରଣ ଦେବାକୁ ଯାଇ କହିଛନ୍ତି ଯେ ଆଚରଣ ତାହା ପରିଣାମ ଅଟେ, ଇଫେକ୍ଟ ଅଟେ ଏବଂ ଭାବ ତାହା କାରଣ ଅଟେ, କଜ୍ ଅଟେ । ପରିଣାମରେ ସିଧା ପରିବର୍ତ୍ତନ ଅଣାଯାଇ ପାରିବ ନାହିଁ । ତାହା କେବଳ ତା'ର ବୈଜ୍ଞାନିକ ରୀତି ଅନୁସାରେ ଅଣାଯାଇ ପାରିବ । କାରଣ ବଦଳିବା ଦ୍ୱାରା ପରିଣାମ ଆପେ ଆପେ ବଦଳିଯାଏ । କାରଣ ବଦଳାଇବା ପାଇଁ ଏବେ ଏହି ଜନ୍ମରେ ନୂଆ ରୂପରେ ଭାବ ବଦଳାଅ । ସେହି ଭାବ ପରିବର୍ତ୍ତନ ପାଇଁ ଦାଦାଶ୍ରୀ ନଅ କଲମ ଅନୁସାରେ ଭାବନା କରିବା ଶିଖାଇଛନ୍ତି । ସମସ୍ତ ଶାସ୍ତ୍ର ଯେଉଁ ଉପଦେଶ ଦିଅନ୍ତି, ଯାହାର କୌଣସି ପରିଣାମ ଆସେ ନାହିଁ, ତାହାର ସାରାଂଶ ନଅ କଲମ ଦ୍ୱାରା ଦାଦାଶ୍ରୀ ଆମୂଳ ପରିବର୍ତ୍ତନର ଚାବି ରୂପରେ ଦେଇଛନ୍ତି । ଯାହାର ଅନୁସରଣ କରି ଲକ୍ଷ-ଲକ୍ଷ ଲୋକ ଏହି ଜୀବନ ତ ଠିକ କିନ୍ତୁ ଆଗାମୀ ଜନ୍ମୋଜନ୍ମ ମଧ୍ୟ ସୁଧାରି ନେଇଛନ୍ତି । ବାସ୍ତବରେ ଏହି ଜନ୍ମରେ ବାହାରୁ ପରିବର୍ତ୍ତନ ହୁଏ ନାହିଁ କିନ୍ତୁ ଏହି ନଅ କଲମର ଭାବନା କରିବା ଦ୍ୱାରା ଭିତରେ ନୂଆ କାରଣ ମୂଳରୁ ବଦଳିଯାଏ ଏବଂ ଅପାର ଅନ୍ତରଶାନ୍ତିର ଅନୁଭବ ହୁଏ । ଅନ୍ୟର ଦୋଷ ଦେଖିବା ବନ୍ଦ ହୋଇଯାଏ, ଯାହା ପରମଶାନ୍ତି ପ୍ରଦାନ କରିବାର ପରମକାରଣ ହୋଇଯାଏ । ଏବଂ ସେଥିରେ ମଧ୍ୟ ଅନେକ ଲୋକ ପୂର୍ବେ ନଅ କଲମ ପରି କିଛି ଭାବନା କରିଥିଲେ, ଯାହା ଆଜିର ଏହି ଅନୁସନ୍ଧାନରେ ପରିଣମିତ ହୋଇ ତୁରନ୍ତ ବର୍ତ୍ତମାନ ଆଚରଣରେ ଚରିତାର୍ଥ ହୋଇଯାଏ ।

କୌଣସି ବି ସିଦ୍ଧି ପ୍ରାପ୍ତ କରିବାର ଥିବ ତେବେ ତାହା ପାଇଁ କେବଳ ନିଜ ଭିତରେ ବିଦ୍ୟମାନ ଭଗବାନଙ୍କ ପାଖରୁ ବାରମ୍ବାର ଶକ୍ତି ମାଗିବା ଉଚିତ । ଯାହା ନିଶ୍ଚିତ ରୂପେ ଫଳ ଦେବ ।

ଦାଦାଶ୍ରୀ ନିଜ ବିଷୟରେ କୁହନ୍ତି ଯେ, 'ମୁଁ ଏହି ନଅ କଲମ ଆଜୀବନ ପାଳନ କରିଛି, ଏହା ତ ପୁଞ୍ଜି ଅଟେ । ଅର୍ଥାତ ଏହା ମୋର ନିତିଦିନର ମାଲ୍ (ଅନୁଭବ ଜ୍ଞାନ) ଅଟେ, ଯାହା ବାହାରେ ପ୍ରକାଶ କରିଛି । ମୋ ଭିତରେ ଏହି ନଅ କଲମ, ଯାହା ଚାଳିଶ-ଚାଳିଶ ବର୍ଷରୁ ନିରନ୍ତର ଚାଲୁ ରହିଛି, ତାହା ଶେଷରେ ଲୋକକଲ୍ୟାଣ ହେତୁ ପ୍ରକାଶ କରିଛି ।'

ଅନେକ ସାଧକଙ୍କୁ ଏହି ମାନ୍ୟତା ଦୃଢ଼ ହୋଇଯାଏ ଯେ ମୁଁ ଏହି ନଅ କଲମର ସମସ୍ତ କଥା ଜାଣିଛି ଏବଂ ମୋର ଏହିପରି ହିଁ ରହୁଛି, ମାତ୍ର ତାଙ୍କୁ ଯଦି ପଚାରିବା ଯେ ଆପଣଙ୍କ ଦ୍ୱାରା କ'ଣ କାହାକୁ ଦୁଃଖ ହେଉଛି ? ତାଙ୍କ ଘରଲୋକ ଅବା ନିକଟ ସମ୍ପର୍କୀୟଙ୍କୁ ପଚାରିଲେ ସେମାନେ 'ହଁ' କହନ୍ତି । ତାହାର ଅର୍ଥ ଏପରି ଅଟେ ଯେ ସେମାନେ ଯଥାର୍ଥ ରୂପେ ବୁଝିନାହାନ୍ତି । ଏପରି ବୁଝିଥିବା କାମରେ ଆସେ ନାହିଁ । ଅସଲରେ ତ ଜ୍ଞାନୀପୁରୁଷ ନିଜ ଜୀବନରେ ଯାହା ସିଦ୍ଧ କରିଥିବେ, ତାହା ଯଦି ଅନୁଭବଗମ୍ୟ ବାଣୀଦ୍ୱାରା ପ୍ରଦାନ କରାଯାଇଥିବ ତେବେଯାଇ କ୍ରିୟାକାରୀ ହୁଏ । ଅର୍ଥାତ ସେ ଭାବନା ଜ୍ଞାନୀପୁରୁଷଙ୍କ ଦ୍ୱାରା ଦିଆଯାଇଥିବା ଡିଜାଇନ୍ (ଯୋଜନା) ଅନୁସାରେ ହେବା ଉଚିତ ତେବେଯାଇ କାମ ଦେବ ଏବଂ ମୋକ୍ଷମାର୍ଗରେ ତୀବ୍ର ପ୍ରଗତି କରାଇବ । ଏବଂ ଅନ୍ତତଃ ଏପରି ପରିଣାମ ପ୍ରାପ୍ତ ହେବ ଯେ ନିଜଦ୍ୱାରା କୌଣସି ବି ଜୀବକୁ କିଞ୍ଚିତମାତ୍ର ଦୁଃଖ ହେବନାହିଁ, କେବଳ ଏତିକି ନୁହେଁ, ନଅ କଲମ ପ୍ରତିଦିନ ଭାବନା କରିବା ଦ୍ୱାରା କେତେସବୁ ଦୋଷ ଧୋଇ ହୋଇଯାଏ ଏବଂ ଆମେ ମୋକ୍ଷ ମାର୍ଗରେ ଆଗକୁ ବଢ଼ି ପାରୁ ।

**-ଡା. ନୀରୂବେନ ଅମୀନ**

# ଭାବନା ସୁଧାରେ ଜନ୍ମୋଜନ୍ମ

## (ନଅ କଲମ - ସାରାଂଶ, ସବୁ ଶାସ୍ତ୍ରର)

### ଏହାଦ୍ୱାରା ଟଳେ ସମସ୍ତ *ଅନ୍ତରାୟ*

ମୁଁ ତୁମକୁ ଏକ ପୁସ୍ତକ ପଢ଼ିବା ପାଇଁ ଦେଉଛି । ବଡ଼ ନୁହେଁ, ଛୋଟ ପୁସ୍ତକଟିଏ ! ତାହା ପଢ଼ିବ ଟିକିଏ, ଖାଲି ଏମିତି !

**ପ୍ରଶ୍ନକର୍ତ୍ତା :** ଠିକ ଅଛି ।

**ଦାଦାଶ୍ରୀ :** ଥରେ ଏହା ପଢ଼ିନିଅ, ପୁରା ପଢ଼ିନିଅ । ଏହା ଔଷଧ ଦେଉଛି, ଏହା ପଢ଼ିବାର ଔଷଧ ଅଟେ । ଏ ଯେଉଁ ନଅ କଲମ, ଏହା କେବଳ ପଢ଼ିବାର ହିଁ ଅଛି, ଏହା କିଛି କରିବାର ଔଷଧ ନୁହେଁ । ବାକି ତୁମେ ଯାହା କରୁଛ, ସେସବୁ ଠିକ କିନ୍ତୁ ଏହା ତ ଭାବନା କରିବାର ଔଷଧ ଅଟେ, ସେଥିପାଇଁ ଏ ଯେଉଁ ଦେଉଛି, ଏହା ପ୍ରତିଦିନ ପଢ଼ିବ । ଏହାଦ୍ୱାରା ସମସ୍ତ ପ୍ରକାରର *ଅନ୍ତରାୟ* ଟଳିଯିବ ।

ଏଣୁ ପ୍ରଥମେ ଏକ-ଦୁଇ ମିନିଟ ପାଇଁ ଏହି ନଅ କଲମ ପଢ଼ିନିଅ ।

**ପ୍ରଶ୍ନକର୍ତ୍ତା :** ନଅ କଲମ...

୧. ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମାର କିଞ୍ଚିତମାତ୍ର ବି ଅହମ୍ ନ ଦୁଭେ(ଆହତ ନ ହୁଏ), ନ ଦୁଭାଯାଏ ଅଥବା ଦୁଭାଇବା ପ୍ରତି ଅନୁମୋଦନ ନ କରାଯାଏ, ଏପରି ପରମ ଶକ୍ତି ଦିଅନ୍ତୁ ।

ମୋତେ, କୌଣସି ବି ଦେହଧାରୀ ଜୀବାତ୍ମାର କିଞ୍ଚିତମାତ୍ର ବି ଅହମ୍ ନ ଦୁଭେ, ଏପରି ସ୍ୟାଦ୍‌ବାଦ ବାଣୀ, ସ୍ୟାଦ୍‌ବାଦ ବର୍ତ୍ତନ(ବ୍ୟବହାର) ଏବଂ ସ୍ୟାଦ୍‌ବାଦ ମନନ କରିବା ପାଇଁ ପରମ ଶକ୍ତି ଦିଅନ୍ତୁ ।

୨. ହେ ଦାଦା ଭଗବାନ ! ମୋତେ, କୌଣସି ବି ଧର୍ମର କିଞ୍ଚିତମାତ୍ର ବି *ପ୍ରମାଣ* (ମର୍ଯ୍ୟାଦା) ନ ଦୁଭେ, ନ ଦୁଭାଯାଏ ଅଥବା ଦୁଭାଇବା ପ୍ରତି ଅନୁମୋଦନ ନ କରାଯାଏ, ଏପରି ପରମ ଶକ୍ତି ଦିଅନ୍ତୁ ।

ମୋତେ, କୌଣସି ବି ଧର୍ମର କିଞ୍ଚିତମାତ୍ର ବି *ପ୍ରମାଣ* ନ ଦୁଭାଯାଏ ଏପରି ସ୍ୟାଦ୍‌ବାଦ ବାଣୀ, ସ୍ୟାଦ୍‌ବାଦ ବର୍ତ୍ତନ ଏବଂ ସ୍ୟାଦ୍‌ବାଦ ମନନ କରିବା ପାଇଁ ପରମ ଶକ୍ତି ଦିଅନ୍ତୁ ।

୩. ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଉପଦେଶକ, ସାଧୁ, ସାଧ୍ୱୀ ଅବା ଆଚାର୍ଯ୍ୟଙ୍କର ଅବର୍ଣ୍ଣବାଦ, ଅପରାଧ, ଅବିନୟ ନ କରିବା ପାଇଁ ପରମ ଶକ୍ତି ଦିଅନ୍ତୁ ।

୪. ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମା ପ୍ରତି କିଞ୍ଚିତମାତ୍ର ବି ଅଭାବ, ତିରସ୍କାର କେବେ ବି ନ କରେ, ନ କରାଏ, ଅଥବା କର୍ତ୍ତା ପ୍ରତି ଅନୁମୋଦନ ନ କରେ, ଏପରି ପରମ ଶକ୍ତି ଦିଅନ୍ତୁ ।

୫. ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମା ସହ କେବେ ବି କଠୋର ଭାଷା, *ତଂତୀଲୀ* ଭାଷା ନ କହେ, (ଅନ୍ୟ ଦ୍ୱାରା) ନ କୁହାଏ ଅଥବା କହିବା ପାଇଁ ଅନୁମୋଦନ ନ କରେ, ଏପରି ପରମ ଶକ୍ତି ଦିଅନ୍ତୁ ।

କେହି କଠୋର ଭାଷା, *ତଂତୀଲୀ* ଭାଷା କହେ ତେବେ ମୋତେ ମୃଦୁ-ଋଜୁ ଭାଷା କହିବା ପାଇଁ ପରମ ଶକ୍ତି ଦିଅନ୍ତୁ ।

୬. ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମା ପ୍ରତି ସ୍ତ୍ରୀ, ପୁରୁଷ ଅଥବା ନପୁଂସକ, କୌଣସି ବି ଲିଙ୍ଗଧାରୀ ହେଉ, ତେବେ ତାଙ୍କ ସମ୍ବନ୍ଧରେ କିଞ୍ଚିତମାତ୍ର ବି ବିଷୟ-ବିକାର ସମ୍ବନ୍ଧୀ ଦୋଷ, ଇଚ୍ଛା, ଚେଷ୍ଟା ଅଥବା ବିଚାର ସମ୍ବନ୍ଧୀ ଦୋଷ ନ କରେ, ନ କରାଏ ଅଥବା କର୍ତ୍ତା ପ୍ରତି ଅନୁମୋଦନ ନ କରେ,ଏପରି ପରମ ଶକ୍ତି ଦିଅନ୍ତୁ ।

ମୋତେ ନିରନ୍ତର ନିର୍ବିକାର ରହିବା ପାଇଁ ପରମ ଶକ୍ତି ଦିଅନ୍ତୁ ।

୭. ହେ ଦାଦା ଭଗବାନ ! ମୋତେ, କୌଣସି ବି ରସରେ ଲୁବ୍ଧତା ନ ହେଉ, ଏପରି ଶକ୍ତି ଦିଅନ୍ତୁ ।

ସମରସୀ ଆହାର ନେବା ପାଇଁ ପରମ ଶକ୍ତି ଦିଅନ୍ତୁ ।

୮. ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମାର ପ୍ରତ୍ୟକ୍ଷ ଅଥବା ପରୋକ୍ଷ, ଜୀବନ୍ତ ଅଥବା ମୃତ, କାହାରି କିଞ୍ଚିତମାତ୍ର ବି ଅବର୍ଣ୍ଣବାଦ, ଅପରାଧ, ଅବିନୟ ନ କରେ, ନ କରାଏ ଅଥବା କର୍ତ୍ତା ପ୍ରତି ଅନୁମୋଦନ ନ କରେ ଏପରି ପରମ ଶକ୍ତି ଦିଅନ୍ତୁ ।

୯. ହେ ଦାଦା ଭଗବାନ ! ମୋତେ, ଜଗତ କଲ୍ୟାଣ କରିବାରେ ନିମିତ୍ତ ହେବାପାଇଁ ପରମ ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ ।

(ଏତିକି ତୁମକୁ ଦାଦା ଭଗବାନଙ୍କ ପାଖରେ ମାଗିବାର ଅଛି । ଏହା ପ୍ରତିଦିନ ଯନ୍ତ୍ରବତ୍ ପଢ଼ିବାର ଜିନିଷ ନୁହେଁ, ହୃଦୟରେ ରଖିବାର ଜିନିଷ ଅଟେ । ଏହା ପ୍ରତିଦିନ ଉପଯୋଗପୂର୍ବକ ଭାବନା କରିବାର ଜିନିଷ ଅଟେ । ଏତିକି ପାଠରେ ସମସ୍ତ ଶାସ୍ତ୍ରର ସାର ଆସିଯାଏ ।)

**ଦାଦାଶ୍ରୀ :** ସବୁ ଶବ୍ଦ ପଢ଼ିନେଲ ?

**ପ୍ରଶ୍ନକର୍ତ୍ତା :** ହଁ ଆଜ୍ଞା, ସବୁ ଭଲ ଭାବେ ପଢ଼ିନେଲି ।

## ଅହମ୍ ନ ଦୁଭେ...

**ପ୍ରଶ୍ନକର୍ତ୍ତା :** ୧. 'ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମାର କିଞ୍ଚିତମାତ୍ର ବି ଅହମ୍ ନ ଦୁଭେ(ଆହତ ନ ହୁଏ), ନ ଦୁଭାଯାଏ ଅଥବା ଦୁଭାଇବା ପ୍ରତି ଅନୁମୋଦନ ନ କରାଯାଏ, ଏପରି ପରମ ଶକ୍ତି ଦିଅନ୍ତୁ ।

ମୋତେ, କୌଣସି ବି ଦେହଧାରୀ ଜୀବାତ୍ମାର କିଞ୍ଚିତମାତ୍ର ବି ଅହମ୍ ନ ଦୁଭେ, ଏପରି ସ୍ୟାଦ୍‌ବାଦ ବାଣୀ, ସ୍ୟାଦ୍‌ବାଦ ବର୍ତ୍ତନ(ବ୍ୟବହାର) ଏବଂ ସ୍ୟାଦ୍‌ବାଦ ମନନ କରିବା ପାଇଁ ପରମ ଶକ୍ତି ଦିଅନ୍ତୁ ।' ଏହା ବୁଝାନ୍ତୁ ।

**ଦାଦାଶ୍ରୀ :** କାହାର ଅହମ୍ (ଅହଂକାର) ଆହତ ନହେଉ, ସେଥିପାଇଁ ଆମେ ସ୍ୟାଦ୍‌ବାଦ ବାଣୀ ମାଗୁଛେ । ଏପରି ବାଣୀ ଆମକୁ ଧୀରେ-ଧୀରେ ଉତ୍ପନ୍ନ ହେବ । ମୁଁ ଯେଉଁ ବାଣୀ କହୁଛି ନା, ତାହା ମୋତେ ଏହି ଭାବନା କରିବାର ଫଳସ୍ୱରୂପ ହିଁ ପ୍ରାପ୍ତ ହୋଇଛି ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ଏଥିରେ କାହାର ଅହମ୍ ଆହତ ନକରିବା ଉଚିତ, ଏହାର ଅର୍ଥ ଏପରି ତ ନୁହେଁ ନା ଯେ କାହାର ଅହମ୍‌ର ପୋଷଣ କରିବୁ ?

**ଦାଦାଶ୍ରୀ :** ନା । ଏପରି କାହାର ଅହମ୍‌ର ପୋଷଣ କରିବାର ନାହିଁ । କାହାର ଅହମ୍ ଆହତ ନ ହେଉ, ଏପରି ହେବା ଉଚିତ । ମୁଁ କହେ ଯେ କାଚ ଗ୍ଲାସଟି ଭାଙ୍ଗିବ

ନାହିଁ, ତାହାର ଅର୍ଥ ଏପରି ନୁହେଁ ଯେ ତୁମେ କାଚ ଗ୍ଲାସର ଧ୍ୟାନ ରଖିବ । ସେ ନିଜ ଜାଗାରେ ସୁରକ୍ଷିତ ହିଁ ଅଛି । ଏଣୁ ତାହା ଭାଙ୍ଗିବ ନାହିଁ । ଯଦି ତାହା ଭାଙ୍ଗୁଥିବ ତେବେ ତୁମେ ନିଜ ନିମିତ୍ତରୁ ଭାଙ୍ଗ ନାହିଁ । ଏବଂ ତୁମକୁ କେବଳ ଏହି ଭାବନା କରିବାର ଅଛି ଯେ ମୋ ଦ୍ୱାରା କୌଣସି ଜୀବକୁ କିଞ୍ଚିତମାତ୍ର ଦୁଃଖ ନ ହେଉ, ତା'ର ଅହଂକାର ଭଗ୍ନ ନ ହେଉ, ଏପରି ରଖିବା ଉଚିତ । ତା'କୁ ଉପକାରୀ ମାନୁଛେ ।

**ପ୍ରଶ୍ନକର୍ତ୍ତା :** କାମ-ଧନ୍ଦାରେ ସାମ୍ନାବାଲାର ଅହମ୍ ନ ଦୁଭେ ଏପରି ସର୍ବଦା ରହିପାରେ ନାହିଁ, କାହାର ନା କାହାର ଅହମ୍‌କୁ ଆଘାତ ଲାଗି ହିଁ ଯାଏ ।

**ଦାଦାଶ୍ରୀ :** ତାହାକୁ 'ଅହମ୍ ଦୁଭାଇବା' କୁହାଯାଏ ନାହିଁ । ଅହମ୍ ଦୁଭାଇବା ଅର୍ଥାତ୍ କ'ଣ ଯେ ସେ ବିଚରା କିଛି କହିବାକୁ ଚାହୁଁଥିବ ଏବଂ ଆମେ କହିବା, 'ଚୁପ ବସ, ତୁ ପାଟି ଫିଟାନି ।' ଏପରି ତା'ର ଅହଂକାର ଭଗ୍ନ ନକରିବା ଉଚିତ । ଆଉ କାମ-ଧନ୍ଦାରେ ଅହମ୍ ଦୁଭାଇବା ଅର୍ଥାତ୍ ବାସ୍ତବରେ ସେଥିରେ ଅହମ୍ ଦୁଭେ ନାହିଁ, ମନ ଦୁଭେ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ଅହମ୍ ତ ଭଲ ଜିନିଷ ନୁହେଁ, ତେବେ ପୁଣି ତାହାକୁ ଦୁଭାଇବାରେ କ'ଣ ଅସୁବିଧା ?

**ଦାଦାଶ୍ରୀ :** ସେ ନିଜେ ହିଁ ଏବେ ଅହଂକାର ସ୍ୱରୂପ ଅଟେ, ସେଥିପାଇଁ ତା'କୁ ଦୁଭାଇବା ଉଚିତ ନୁହେଁ । ସେ ଯାହା କିଛି ବି କରୁଛି, ସେଥିରେ ମୁଁ ହିଁ କରୁଛି ଏପରି ସେ ମାନୁଛି । ସେଥିପାଇଁ ଆହତ ନ କରିବା ଉଚିତ । ତୁମେ ଘରେ ମଧ୍ୟ କାହାକୁ ଗାଳି ଦେବନାହିଁ । କାହାର ଅହଂକାର ଆହତ ନ ହେଉ ଏପରି ରଖିବ । କାହାର ବି ଅହଂକାର ଆହତ ନ କରିବା ଉଚିତ୍ । ଲୋକଙ୍କ ଅହଂକାର ଆହତ କରିବା ଦ୍ୱାରା ସେମାନେ ତୁମଠୁ ଅଲଗା ହୋଇଯାନ୍ତି, ପୁଣି କେବେ ତୁମକୁ ମିଳନ୍ତି ନାହିଁ । ଏପରି କାହାକୁ କହିବା ଉଚିତ ନୁହେଁ ଯେ, 'ତୁ ୟୁଜ୍‌ଲେସ(ନିକମ୍ମା), ତୁ ଏମିତି, ସେମିତି ।' ଏପରି କାହାର ମାନ ଭଙ୍ଗ କରିବା ଉଚିତ ନୁହେଁ । ଗାଳି କରିପାରିବା, ଗାଳି କରିବାରେ ଅସୁବିଧା ନାହିଁ । କିଛି ବି ହେଉ କିନ୍ତୁ କାହାର ଅହଂକାର ଆହତ ନ କରିବା ଉଚିତ । ମୁଣ୍ଡରେ ପ୍ରହାର ହେବ ସେଥିରେ ଅସୁବିଧା ନାହିଁ, କିନ୍ତୁ ତା'ର ଅହଂକାର ଉପରେ ପ୍ରହାର ନହେବା ଉଚିତ । କାହାର ଅହଂକାର ଭଗ୍ନ ନ କରିବା ଉଚିତ ।

କେଉଁ ମଜୁରିଆ ହୋଇଥିବ, ତା'ର ମଧ୍ୟ ତିରସ୍କାର କରିବ ନାହିଁ । ତିରସ୍କାର କଲେ ତା'ର ଅହମ୍ ଭଗ୍ନ ହେବ । ଆମକୁ ଯଦି ତା'ର ଆବଶ୍ୟକତା ନଥିବ ତେବେ ତା'କୁ କହିବା ଯେ 'ଭାଇ, ଏବେ ମୋତେ ତୋର କାମ ନାହିଁ ।' ଆଉ ଯଦି ତା'ର

ଅହଂକାର ଭଗ୍ନ ନ ହେଉଥିବ ତେବେ ପଇସା ଦେଇ ମଧ୍ୟ ତା'କୁ କାମରୁ ମୁକ୍ତ କରିଦେବ । ପଇସା ତ ଆସିଯିବ କିନ୍ତୁ ତା'ର ଅହମ୍ ଭଗ୍ନ ନହେବା ଉଚିତ୍ । ନହେଲେ ସେ ବୈର(ଶତ୍ରୁତା) ରଖିବ, ଭୟଙ୍କର ବୈର ବାନ୍ଧିବ! ଆମର କଲ୍ୟାଣ ହେବାକୁ ଦେବ ନାହିଁ, ମଝିରେ ଆସିବ ।

ଏହା ତ ବହୁତ ଗହନ କଥା ଅଟେ! ଏବେ ଏହା ସତ୍ତ୍ୱେ ଯଦି କାହାର ଅହଂକାର ତୁମଦ୍ୱାରା ଆହତ ହୋଇଯାଇଥିବ ତେବେ ଏଠି ମୋ ପାଖରେ (ଏହି କଲମ ଅନୁସାରେ) ଶକ୍ତି ମାଗିବ । ଅର୍ଥାତ ଯାହା ହେଲା ସେଥିରୁ ନିଜ ଅଭିପ୍ରାୟ ଅଲଗା ରଖୁଛେ, ସେଥିପାଇଁ ତାହାର ଅଧିକ ଉତ୍ତରଦାୟିତ୍ୱ ରହେନାହିଁ । କାହିଁକିନା ଏବେ ତା'ର ଅଭିପ୍ରାୟ ଅଲଗା ହୋଇଗଲା । ଅଭିପ୍ରାୟ ଯାହା ଅହଂକାର ଆହତ କରିବାର ଥିଲା, ତାହା ଏହିପରି ଶକ୍ତି ମାଗିବା ଦ୍ୱାରା ଅଲଗା ହୋଇଗଲା ।

**ପ୍ରଶ୍ନକର୍ତ୍ତା :** ଅଭିପ୍ରାୟରୁ ଅଲଗା ହୋଇଗଲା ଅର୍ଥାତ କ'ଣ ?

**ଦାଦାଶ୍ରୀ :** 'ଦାଦା ଭଗବାନ' ତ ବୁଝିଗଲେ ନା ଯେ ଏ ବିଚରାର ଏବେ କାହାର ଅହମ୍ ଆହତ କରିବାର ଇଚ୍ଛା ନାହିଁ । ଆମ ନିଜର ଏପରି ଇଚ୍ଛା ନାହିଁ ତଥାପି ହୋଇଯାଉଛି । ଯେବେକି ଜଗତର ଲୋକଙ୍କୁ ଇଚ୍ଛା ସହିତ ହେଉଛି । ଅର୍ଥାତ ଏହି କଲମ ବୋଲିବା ଦ୍ୱାରା କ'ଣ ହୁଏ ନା, ଆମ ଅଭିପ୍ରାୟ ବଦଳିଗଲା । ଏଣୁ ଆମେ ସେହି ପ୍ରସଙ୍ଗରୁ ମୁକ୍ତ ହୋଇଗଲେ ।

ଅର୍ଥାତ କେବଳ ଏହି ଶକ୍ତି ମାଗିବାର ଅଛି । ତୁମକୁ କିଛି କରିବାର ନାହିଁ, କେବଳ ଶକ୍ତି ହିଁ ମାଗିବାର ଅଛି । ଏହାକୁ ଅମଳରେ ଆଣିବାର ନାହିଁ ।

**ପ୍ରଶ୍ନକର୍ତ୍ତା :** ଶକ୍ତି ମାଗିବାର କଥା ଠିକ ଅଛି, କିନ୍ତୁ ଆମକୁ ଏପରି କ'ଣ କରିବା ଉଚିତ ଯାଦ୍ୱାରା ଅନ୍ୟମାନଙ୍କର ଅହମ୍ ଆହତ ନହେବ ?

**ଦାଦାଶ୍ରୀ :** ନା, ଏପରି କିଛି କରିବାର ନାହିଁ । ଏହି କଲମ ଅନୁସାରେ ତୁମକୁ କେବଳ ବୋଲିବାର ଅଛି, ବାସ୍! ଆଉ କିଛି କରିବାର ନାହିଁ । ବର୍ତ୍ତମାନ ଆମଦ୍ୱାରା ଯେଉଁ ଅହମ୍ ଆହତ ହୋଇଯାଉଛି ତାହା ଫଳ (ଡିସ୍‌ଚାର୍ଜରେ) ଆସିଛି । ଏବେ ଯାହା ହେଉଛି ତାହା ତ ପ୍ରଥମେ ଡିସାଇଡ୍ ହୋଇଯାଇଛି, ତାହାକୁ ଅଟକାଯାଇ ପାରିବ ବି ନାହିଁ, ତାହାକୁ ବଦଳାଇବା ତାହା ତ କେବଳ ବୃଥା ପରିଶ୍ରମ ଅଟେ । କିନ୍ତୁ ଏହି କଲମ ଯଦି ବୋଲିବା ତେବେ ପୁଣି ଉତ୍ତରଦାୟିତ୍ୱ ହିଁ ରହେ ନାହିଁ ।

**ପ୍ରଶ୍ନକର୍ତ୍ତା :** ଏବଂ ଏହା ହୃଦୟର ସହ ବୋଲିବା ଉଚିତ ।

**ଦାଦାଶ୍ରୀ :** ହୃଦୟର ସହ ହିଁ ସବୁ କରିବା ଉଚିତ । ଏବଂ ଯେଉଁ ମଣିଷ କରେ, ସେ ମିଛରେ କରେ ନାହିଁ, ହୃଦୟର ସହ ହିଁ କରେ, କିନ୍ତୁ ଏଥିରେ ନିଜ ଅଭିପ୍ରାୟ ଅଲଗା ହୋଇଗଲା । ଏହା ଏକ ପ୍ରକାର ବହୁତ ବଡ଼ ବିଜ୍ଞାନ ଅଟେ, ବୁଝିବା ଯୋଗ୍ୟ ।

ଏହା ଅନୁସାରେ କିଛି କରିବାର ନାହିଁ, ତୁମକୁ ତ ଏହି ନଅ କଲମ କେବଳ ବୋଲିବାର ଅଛି । କେବଳ ଶକ୍ତି ମାଗିବାର ଅଛି ଯେ 'ଦାଦା ଭଗବାନ, ମୋତେ ଶକ୍ତି ଦିଅ । ମୋତେ ଏହି ଶକ୍ତି ଦରକାର ।' ଏହାଦ୍ୱାରା ତୁମକୁ ଶକ୍ତି ପ୍ରାପ୍ତ ହେବ ଏବଂ ଉତ୍ତରଦାୟିତ୍ୱ ରହିବ ନାହିଁ । ଜଗତ କେଉଁ ବିଜ୍ଞାନ ଶିଖାଏ ? 'ଏପରି କର ନାହିଁ' । ଲୋକେ କ'ଣ କହନ୍ତି ଯେ ଆରେ ଭାଇ, ମୋତେ କରିବାର ନାହିଁ ତଥାପି ହୋଇଯାଉଛି । ଏଣୁ ତୁମ ଜ୍ଞାନ ଆମକୁ 'ଫିଟ୍' (ଅନୁକୂଳ) ହେଉନାହିଁ । ଏହା ଯେଉଁ ତୁମେ କହୁଛ, ଏହାଦ୍ୱାରା ପୂର୍ବର ବନ୍ଦ ହେଉନାହିଁ ଏବଂ ଆଜିର ଅଟକୁ ନାହିଁ, ଏଣୁ ଉଭୟ ପକ୍ଷରୁ କ୍ଷତି । ଅର୍ଥାତ୍ 'ଫିଟ୍' ହେଉଥିବ ଏପରି ହେବା ଉଚିତ ।

## ଭାବ ପ୍ରତିକ୍ରମଣ, ତତ୍କ୍ଷଣ

**ପ୍ରଶ୍ନକର୍ତ୍ତା :** ଯେତେବେଳେ ସାମ୍ନାବାଲାର ଅହଂକାର ଆହତ ହୋଇଯାଏ, ସେତେବେଳେ ଭିତରେ ଏପରି ହୁଏ ଯେ ଏହା ମୋର ଅହଂକାର କହିଲା ନା ?

**ଦାଦାଶ୍ରୀ :** ନା, ଏପରି ଅର୍ଥ ବାହାର କରିବାର ଆବଶ୍ୟକତା ନାହିଁ । ଆମ ଜାଗୃତି କ'ଣ କହୁଛି ? ଏହା ଆମର ମୋକ୍ଷମାର୍ଗ ଅର୍ଥାତ ଅନ୍ତର୍ମୁଖୀ ମାର୍ଗ ଅଟେ । ନିରନ୍ତର ଭିତରର ଜାଗୃତିରେ ହିଁ ରହିବ ଏବଂ ସାମ୍ନାବାଲାର ଅହଂକାର ଯଦି ଆହତ ହୋଇଯାଏ ତେବେ ତୁରନ୍ତ ତାହାର ପ୍ରତିକ୍ରମଣ କରିନେବ, ଏହା ହିଁ ତୁମର କାମ । ତୁମେ ତ ଏତେ ସାରା ପ୍ରତିକ୍ରମଣ କରୁଛ ସେଥିରେ ଆଉ ଗୋଟିଏ ! ମୋ ଦ୍ୱାରା ବି ଯଦି କେବେ କାହାର ଅହମ୍ ଆହତ ହୋଇଯାଇଥାଏ, ତେବେ ମୁଁ ମଧ୍ୟ ପ୍ରତିକ୍ରମଣ କରେ ।

ସେଥିପାଇଁ ପ୍ରତିଦିନ ସକାଳେ ଏପରି କହିବ ଯେ, 'ମୋ ମନ-ବଚନ-କାୟାରୁ କୌଣସି ବି ଜୀବକୁ କିଞ୍ଚିତମାତ୍ର ବି ଦୁଃଖ ନହେଉ ।' ଏପରି ପାଞ୍ଚଥର କହି ଘରୁ ବାହାରିବ ଏବଂ ପରେ ଯଦି ଦୁଃଖ ହେବ ତେବେ ତାହା ଆମ ଇଚ୍ଛା ବିରୁଦ୍ଧରେ ହୋଇଛି, ସନ୍ଧ୍ୟାରେ ତାହାର ପ୍ରତିକ୍ରମଣ କରିନେବ ।

ପ୍ରତିକ୍ରମଣ ଅର୍ଥାତ କ'ଣ ? ଦାଗ ଲାଗିବା ମାତ୍ରେ ତୁରନ୍ତ ଧୋଇଦେବା । ପରେ କିଛି ଅସୁବିଧା ନାହିଁ । ପରେ କ'ଣ ଝଂଝଟ୍ ? ପ୍ରତିକ୍ରମଣ କିଏ କରେ ନାହିଁ ?

ଯାହାକୁ (ଅଜ୍ଞାନ ରୂପୀ) ବେହୋଶୀ ଅଛି, ସେ ମନୁଷ୍ୟ ପ୍ରତିକ୍ରମଣ କରେନାହିଁ, ନହେଲେ ମୁଁ ଯାହାକୁ ଜ୍ଞାନ ପ୍ରଦାନ କରିଛି, ସେ ମନୁଷ୍ୟ କିପରି ହୋଇଯାଇଛନ୍ତି ? ବିଚକ୍ଷଣ ପୁରୁଷ ହୋଇଯାଇଛନ୍ତି, ପ୍ରତିକ୍ଷଣ ବିଚାରବନ୍ତ । ବାଇଶ ତୀର୍ଥଙ୍କରଙ୍କ ଅନୁଗାମୀ ବିଚକ୍ଷଣ ଥିଲେ । ସେମାନେ 'ଶୁଟ୍ ଅନ୍ ସାଇଟ୍' ପ୍ରତିକ୍ରମଣ କରୁଥିଲେ । ଦୋଷ ହେବା ମାତ୍ରେ ତୁରନ୍ତ 'ଶୁଟ୍' ! ଆଉ ଆଜିକାଲିର ଲୋକ ଏହା କରିପାରିବେ ନାହିଁ, ସେଥିପାଇଁ ଭଗବାନ ଏହି ରାୟଶୀ-ଦେବଶୀ (ରାତି ସାରା ହୋଇଥିବା ଦୋଷ ପାଇଁ ସକାଳେ କ୍ଷମା ମାଗିବା - ଦିନସାରା ହୋଇଥିବା ଦୋଷ ପାଇଁ ରାତିରେ କ୍ଷମା ମାଗିବା), ପାକ୍ଷିକ ଏବଂ ପର୍ଯ୍ୟୁଷଣରେ ସମ୍ୱତ୍ସରୀ(ବାର୍ଷିକ) ପ୍ରତିକ୍ରମଣ କରିବାକୁ ବତାଇଛନ୍ତି ।

## ସ୍ୟାଦବାଦ ବାଣୀ, ବର୍ତ୍ତନ, ମନନ...

**ପ୍ରଶ୍ନକର୍ତ୍ତା :** ଏବେ 'କୌଣସି ବି ଦେହଧାରୀ ଜୀବାତ୍ମାର କିଞ୍ଚିତମାତ୍ର ବି ଅହମ୍ ନ ଦୁଭେ, ଏପରି ସ୍ୟାଦ୍‌ବାଦ ବାଣୀ, ସ୍ୟାଦ୍‌ବାଦ ବର୍ତ୍ତନ(ବ୍ୟବହାର) ଏବଂ ସ୍ୟାଦ୍‌ବାଦ ମନନ କରିବା ପାଇଁ ପରମ ଶକ୍ତି ଦିଅନ୍ତୁ ।' ଏହା ବୁଝାନ୍ତୁ ।

**ଦାଦାଶ୍ରୀ :** ସ୍ୟାଦ୍‌ବାଦ ଅର୍ଥାତ ସବୁଲୋକ କେଉଁ ଭାବ ସହ, କେଉଁ ଭ୍ୟୁ-ପଏଣ୍ଟ(ଦୃଷ୍ଟିକୋଣ)ରୁ କହୁଛନ୍ତି, ଆମକୁ ଏହା ବୁଝିବା ଉଚିତ ।

**ପ୍ରଶ୍ନକର୍ତ୍ତା :** ସାମ୍ନାବାଲାର 'ଭ୍ୟୁ-ପଏଣ୍ଟ' ବୁଝିବା ତାହା ସ୍ୟାଦ୍‌ବାଦ କୁହାଯାଏ ?

**ଦାଦାଶ୍ରୀ :** ସାମ୍ନାବାଲାର 'ଭ୍ୟୁ-ପଏଣ୍ଟ' ବୁଝିବା ଏବଂ ସେହି ଅନୁସାରେ ବ୍ୟବହାର କରିବା, ତାହାର ନାମ ସ୍ୟାଦ୍‌ବାଦ । ତା 'ଭ୍ୟୁ-ପଏଣ୍ଟ'କୁ ଦୁଃଖ ନ ପହଞ୍ଚୁ ଏପରି ବ୍ୟବହାର କରିବା । ଚୋରର 'ଭ୍ୟୁ-ପଏଣ୍ଟ'କୁ ବି ଦୁଃଖ ନହୁଏ ଏପରି ଯଦି ତୁମେ କୁହ, ତାହାର ନାମ ସ୍ୟାଦ୍‌ବାଦ !

ମୁଁ ଯାହା କହେ, ତାହା ମୁସ୍‌ଲିମ ହେଉ ଅବା ପାର୍‌ସୀ ହେଉ, ସମସ୍ତଙ୍କୁ ସମାନ ରୂପରେ ବୁଝାପଡ଼େ । କାହାର ମର୍ଯ୍ୟାଦା ଖଣ୍ଡନ ହୁଏ ନାହିଁ ଯେ 'ପାର୍‌ସୀ ଏପରି ଅଟନ୍ତି, ସ୍ଥାନକବାସୀ ଏପରି ଅଟନ୍ତି ।' ଏପରି ଦୁଃଖ ନହେବା ଉଚିତ ।

**ପ୍ରଶ୍ନକର୍ତ୍ତା :** ଏଠାରେ କେହି ଚୋର ବସିଥିବ, ତା'କୁ ଆମେ ଯଦି କହିବୁ ଯେ ଚୋରି କରିବା ଠିକ୍ ନୁହେଁ, ତେବେ ତା' ମନକୁ ଦୁଃଖ ତ ହେବ ନା ?

**ଦାଦାଶ୍ରୀ :** ନା, ଏପରି କହିବ ନାହିଁ । ଆମେ ତା'କୁ ଏପରି କହିବା ଯେ 'ଚୋରି କରିବାର ଫଳ ଏପରି ଆସେ । ତୋତେ ଠିକ୍ ଲାଗୁଛି ତେବେ କର ।' ଏପରି କହିପାରିବା । ଅର୍ଥାତ କଥା ଢଙ୍ଗରେ କରିବା ଉଚିତ । ତେବେ ସେ ଶୁଣିବା ପାଇଁ ପ୍ରସ୍ତୁତ ହେବ । ନହେଲେ ସେ କଥା ଶୁଣିବ ହିଁ ନାହିଁ ଏବଂ ଓଲଟା ତୁମେ ତୁମ

ଶବ୍ଦ ବ୍ୟର୍ଥ ହରାଇବ । ଆମ କହିବା ବ୍ୟର୍ଥ ଯିବ ଏବଂ ଉପରୁ ସେ ବୈର ବାନ୍ଧିବ ଯେ 'ବଡ଼ ଆସିଲେ ଉପଦେଶ ଦେବାବାଲା!' ଏପରି ନହେବା ଉଚିତ ।

ଲୋକେ କହନ୍ତି ଯେ ଚୋରି କରିବା ଅପରାଧ ଅଟେ । କିନ୍ତୁ ଚୋର କ'ଣ ମାନେ ଯେ ଚୋରି କରିବା ମୋ ଧର୍ମ । ମୋ ପାଖକୁ କେଉଁ ଚୋରକୁ ଯଦି ଆଣିବ ତେବେ ମୁଁ ତା' କାନ୍ଧରେ ହାତ ରଖି ଏକାନ୍ତରେ ପଚାରିବି ଯେ 'ଭାଇ, ଏହି ବିଜନେସ୍(ବ୍ୟାପାର) ତୋତେ ଭଲ ଲାଗୁଛି ? ତୋତେ ପସନ୍ଦ ?' ପୁଣି ସେ ନିଜର ସତ୍ୟତା ବତାଇବ । ମୋ ପାଖରେ ତା'କୁ ଭୟ ଲାଗେ ନାହିଁ । ମନୁଷ୍ୟ ଭୟ କାରଣରୁ ମିଛ କହେ । ପୁଣି ତା'କୁ ବୁଝାଏ ଯେ, 'ଏ ଯାହା ତୁ କରୁଛୁ ତାହାର ଉତ୍ତରଦାୟିତ୍ୱ କ'ଣ ? ତାହାର ଫଳ କ'ଣ ଆସେ, ଏହା ତୋତେ ଜଣା ଅଛି ?' 'ସେ ଚୋରି କରେ' ଏପରି ତ ମୋ ମନରେ ବି ନଥାଏ ଆଉ ଯଦି ଏପରି ମୋ ମନରେ ଥାଆନ୍ତା ତେବେ ତା'ଉପରେ ତାହାର ପ୍ରଭାବ ପଡ଼ନ୍ତା । ସମସ୍ତେ ନିଜ-ନିଜ ଧର୍ମରେ ଅଛନ୍ତି । କୌଣସି ବି ଧର୍ମର ପ୍ରମାଣ (ମର୍ଯ୍ୟାଦା) ଖଣ୍ଡନ ହୁଏ ନାହିଁ, ତାହାର ନାମ ସ୍ୟାଦ୍‌ବାଦ ବାଣୀ । ସ୍ୟାଦ୍‌ବାଦ ବାଣୀ ସମ୍ପୂର୍ଣ୍ଣ ହୋଇଥାଏ । ପ୍ରତ୍ୟେକଙ୍କ ପ୍ରକୃତି ଅଲଗା ଅଲଗା ଅଟେ, ତଥାପି ସ୍ୟାଦ୍‌ବାଦ ବାଣୀ କାହାର ବି ପ୍ରକୃତିକୁ ବାଧା ପହଞ୍ଚାଏ ନାହିଁ ।

**ପ୍ରଶ୍ନକର୍ତ୍ତା :** ସ୍ୟାଦ୍‌ବାଦ ମନନ ଅର୍ଥାତ କ'ଣ ?

**ଦାଦାଶ୍ରୀ :** ସ୍ୟାଦ୍‌ବାଦ ମନନ ଅର୍ଥାତ ବିଚାରରେ, ବିଚାର କରିବା ସମୟରେ ମଧ୍ୟ କୌଣସି ଧର୍ମର ମର୍ଯ୍ୟାଦା ଖଣ୍ଡନ ନହେବା ଉଚିତ । ବ୍ୟବହାରରେ ତ ନହେବା ହିଁ ଉଚିତ କିନ୍ତୁ ବିଚାରରେ ମଧ୍ୟ ନହେବା ଉଚିତ । ବାହାରେ କହିବା ତାହା ଅଲଗା କିନ୍ତୁ ମନରେ ବି ଏପରି ଭଲ ବିଚାର ହେବା ଦରକାର ଯେ ସାମ୍ନାବାଲାର ମର୍ଯ୍ୟାଦା ଖଣ୍ଡନ ନ ହେଉ । କାହିଁକିନା ମନରେ ଯେଉଁ (ଖରାପ) ବିଚାର ଆସେ, ତାହା ସାମ୍ନାବାଲାକୁ ପହଞ୍ଚେ । ସେଥିପାଇଁ ତ ସେମାନଙ୍କ ମୁହଁ ଫୁଲିଥାଏ । କାରଣ ତୁମ ବିଚାର ସେଠି ପହଞ୍ଚି ତାଙ୍କ ଉପରେ ପ୍ରଭାବ ପକାଏ ।

**ପ୍ରଶ୍ନକର୍ତ୍ତା :** କାହା ପ୍ରତି ଯଦି ଖରାପ ବିଚାର ଆସେ ତେବେ ତାହାର ପ୍ରତିକ୍ରମଣ କରିବା ଉଚିତ ?

**ଦାଦାଶ୍ରୀ :** ହଁ, ନହେଲେ ତା' ମନ ବିଗିଡ଼ିବ ଏବଂ ପ୍ରତିକ୍ରମଣ କରିବାଦ୍ୱାରା ତା'ର ବିଗିଡ଼ା ମନ ସୁଧୁରିଯିବ । କାହାରି ପାଇଁ ମଧ୍ୟ ଖରାପ ଅବା ଏମିତି-ସେମିତି ଭାବିବା ଉଚିତ ନୁହେଁ । ଏପରି କିଛି ବି କରିବା ଉଚିତ ନୁହେଁ । 'ସମସ୍ତେ ସମସ୍ତଙ୍କର ସମ୍ଭାଳ', ବାସ୍ ! ଅନ୍ୟ କୌଣସି ଝଂଝଟ୍ ନାହିଁ ।

## ଧର୍ମର ପ୍ରମାଣ ନ ଦୁଭେ...

**ପ୍ରଶ୍ନକର୍ତ୍ତା :** ୨. ହେ ଦାଦା ଭଗବାନ! ମୋତେ, କୌଣସି ବି ଧର୍ମର କିଞ୍ଚିତମାତ୍ର ବି *ପ୍ରମାଣ* ନ ଦୁଭେ, ନ ଦୁଭାଯାଏ ଅଥବା ଦୁଭାଇବା ପ୍ରତି ଅନୁମୋଦନ ନ କରାଯାଏ, ଏପରି ପରମ ଶକ୍ତି ଦିଅନ୍ତୁ।

ମୋତେ, କୌଣସି ବି ଧର୍ମର କିଞ୍ଚିତମାତ୍ର ବି *ପ୍ରମାଣ* ନ ଦୁଭାଯାଏ ଏପରି ସ୍ୟାଦ୍‌ବାଦ ବାଣୀ, ସ୍ୟାଦ୍‌ବାଦ ବର୍ତ୍ତନ ଏବଂ ସ୍ୟାଦ୍‌ବାଦ ମନନ କରିବା ପାଇଁ ପରମ ଶକ୍ତି ଦିଅନ୍ତୁ।

**ଦାଦାଶ୍ରୀ :** କାହାର ବି ମର୍ଯ୍ୟାଦା ଖଣ୍ଡନ ନ କରିବା ଉଚିତ। କେହି ବି ଭୁଲ ଅଟେ, ଏପରି ନ ଲାଗିବା ଉଚିତ। 'ଏକ' ସଂଖ୍ୟା କୁହାଯାଏ ନା ନାହିଁ?

**ପ୍ରଶ୍ନକର୍ତ୍ତା :** ହଁ ଆଜ୍ଞା।

**ଦାଦାଶ୍ରୀ :** ତେବେ 'ଦୁଇ' ସଂଖ୍ୟା କୁହାଯାଏ ନା ନାହିଁ?

**ପ୍ରଶ୍ନକର୍ତ୍ତା :** ହଁ, କୁହାଯାଏ।

**ଦାଦାଶ୍ରୀ :** ତେବେ 'ଶହେ' ବାଲା କ'ଣ କହିବେ? 'ଆମର ଠିକ, ତୁମର ଭୁଲ।' ଏପରି କହିପାରିବା ନାହିଁ। ସମସ୍ତଙ୍କର ଠିକ। 'ଏକ' ର 'ଏକ' ଅନୁସାରେ, 'ଦୁଇ'ର 'ଦୁଇ' ଅନୁସାରେ, ସମସ୍ତେ ନିଜ ଅନୁସାରେ ଠିକ। ଅର୍ଥାତ ପ୍ରତ୍ୟେକଙ୍କର (ଭ୍ୟୁ-ପଏଣ୍ଟ) ଯିଏ ସ୍ୱୀକାର କରେ, ତାହାର ନାମ ସ୍ୟାଦ୍‌ବାଦ। ଏକ ବସ୍ତୁ ନିଜ ଗୁଣଧର୍ମରେ ଅଛି ଏବଂ ଆମେ ତାହାର କିଛି ଗୁଣକୁ ସ୍ୱୀକାର କରିବା ଏବଂ ବାକି ଗୁଣକୁ ଅସ୍ୱୀକାର କରିବା, ଏହା ଉଚିତ ନୁହେଁ। ସ୍ୟାଦ୍‌ବାଦ ଅର୍ଥାତ ପ୍ରତ୍ୟେକଙ୍କ *ପ୍ରମାଣ* (ମାନ୍ୟତା) ଅନୁସାରେ। ୩୬୦ ଡିଗ୍ରୀ ହେବା ପରେ ସମସ୍ତଙ୍କର ଠିକ କୁହାଯାଏ କିନ୍ତୁ ସେପର୍ଯ୍ୟନ୍ତ ପ୍ରତ୍ୟେକ ନିଜ ନିଜ ଡିଗ୍ରୀ ଅନୁସାରେ ଠିକ।

କୌଣସି ବି ଧର୍ମ ଭୁଲ ଏପରି ଆମେ କହିପାରିବା ନାହିଁ। ପ୍ରତ୍ୟେକ ଧର୍ମ ଠିକ ଅଟେ, କେହି ଭୁଲ ନୁହନ୍ତି, ଆମେ କାହାକୁ ଭୁଲ କହିପାରିବା ହିଁ ନାହିଁ। ତାହା ତା'ର ଧର୍ମ ଅଟେ। ମାଂସାହାର ଯଦି କରୁଥିବ, ଆମେ ତା'କୁ ଭୁଲ କିପରି କହିପାରିବା? ସେ କହିବ, 'ମାଂସାହାର କରିବା ମୋର ଧର୍ମ।' ତେବେ ଆମେ 'ନା' କହିପାରିବା ନାହିଁ। ତାହା ତା'ର ମାନ୍ୟତା ଅଟେ, ତା'ର ବିଲିଫ୍ ଅଟେ। ଆମେ କାହାର ବି ବିଲିଫ୍‌ର ଖଣ୍ଡନ କରିପାରିବା ନାହିଁ। କିନ୍ତୁ ଯିଏ ଶାକାହାରୀ ପରିବାରରେ ଜନ୍ମ ହୋଇଛନ୍ତି, ଯଦି ସେମାନେ ମାଂସାହାର କରୁଥିବେ ତେବେ ସେମାନଙ୍କୁ କହିବା ଉଚିତ ଯେ,

'ଭାଇ, ଏହା ଭଲ କଥା ନୁହେଁ।' ପରେ ଯଦି ତା'କୁ ମାଂସାହାର କରିବାର ଥିବ ତେବେ ଆମେ ସେଥିରେ ବିରୋଧ କରିପାରିବା ନାହିଁ। ଆମକୁ ବୁଝାଇବା ଉଚିତ ଯେ ଏହା ହେଲ୍ପଫୁଲ୍(ସହାୟକ) ନୁହେଁ।

ସ୍ୟାଦ୍‌ବାଦ ଅର୍ଥାତ କୌଣସି ଧର୍ମର ମର୍ଯ୍ୟାଦା ଖଣ୍ଡନ ନ କରିବା। ଯେତେ ମାତ୍ରାରେ ସତ୍ୟ ହୋଇଥିବ ସେତେ ମାତ୍ରାରେ ସତ୍ୟ କହିବା ଏବଂ ଯେତେ ମାତ୍ରାରେ ଅସତ୍ୟ ହୋଇଥିବ ସେତେ ମାତ୍ରାରେ ଅସତ୍ୟ କହିବା, ତାହାର ଅର୍ଥ ମର୍ଯ୍ୟାଦା ଖଣ୍ଡନ କଲେ ନାହିଁ। ଖ୍ରୀଷ୍ଟିୟାନ ମର୍ଯ୍ୟାଦା, ମୁସଲିମ ମର୍ଯ୍ୟାଦା, କୌଣସି ବି ଧର୍ମର ମର୍ଯ୍ୟାଦା ଖଣ୍ଡନ କରିବା ଉଚିତ ନୁହେଁ। କାହିଁକିନା ସବୁ ଧର୍ମ ୩୬୦ ଡିଗ୍ରୀରେ ମିଶିଯାନ୍ତି। ରିୟଲ୍ ଇଜ୍ ଦ ସେଣ୍ଟର୍ ଏଣ୍ଡ୍ ଅଲ୍ ଦିଜ୍ ଆର୍ ରିଲେଟିଭ୍ ଭ୍ୟୁଜ୍ (ରିୟଲ୍ ସେଣ୍ଟର୍ ଅଟେ ଏବଂ ଏସବୁ ରିଲେଟିଭ୍-ସାପେକ୍ଷ ଦୃଷ୍ଟିକୋଣ ଅଟେ।) ସେଣ୍ଟର୍‌ବାଲା ପାଇଁ ରିଲେଟିଭ୍ ଭ୍ୟୁ ସବୁ ସମାନ ଅଟେ। ଭଗବାନଙ୍କ ସ୍ୟାଦ୍‌ବାଦ ଅର୍ଥାତ କାହାକୁ କିଞ୍ଚିତମାତ୍ର ଦୁଃଖ ନହେଉ, ପୁଣି ପଛେ କୌଣସି ବି ଧର୍ମ ହେଉ।

ଅର୍ଥାତ ସ୍ୟାଦ୍‌ବାଦ ମାର୍ଗ ଏପରି ହୋଇଥାଏ। ପ୍ରତ୍ୟେକ ଧର୍ମକୁ ସ୍ୱୀକାର କରିବାକୁ ପଡ଼େ। ସାମ୍ନାବାଲା ଯଦି ଦୁଇ ଚାପୁଡ଼ା ମାରେ ତେବେ ମଧ୍ୟ ଆମକୁ ସ୍ୱୀକାର କରିବା ଉଚିତ, କାରଣ ସାରା ଜଗତ ନିର୍ଦ୍ଦୋଷ ଅଟେ। ଦୋଷୀ ଦେଖାଯାଉଛି, ତାହା ତୁମ ଦୋଷ କାରଣରୁ ଦେଖାଯାଉଛି। ନହେଲେ, ଜଗତ ଆଦୌ ଦୋଷୀ ନୁହେଁ। କିନ୍ତୁ ତୁମ ବୁଦ୍ଧି ଦୋଷୀ ଦେଖାଏ ଯେ ଇଏ ଭୁଲ କଲା।

## ଅବର୍ଣ୍ଣବାଦ, ଅପରାଧ, ଅବିନୟ...

**ପ୍ରଶ୍ନକର୍ତ୍ତା :** ୩. 'ହେ ଦାଦା ଭଗବାନ! ମୋତେ, କୌଣସି ବି ଦେହଧାରୀ ଉପଦେଶକ, ସାଧୁ, ସାଧ୍ୱୀ ଅବା ଆଚାର୍ଯ୍ୟଙ୍କର ଅବର୍ଣ୍ଣବାଦ, ଅପରାଧ, ଅବିନୟ ନ କରିବା ପାଇଁ ପରମ ଶକ୍ତି ଦିଅନ୍ତୁ।' ଏଥିରେ ଯେଉଁ ଅବର୍ଣ୍ଣବାଦ ଶବ୍ଦ ଅଛି, ତାହାର ଯଥାର୍ଥ ବ୍ୟାଖ୍ୟା କ'ଣ?

**ଦାଦାଶ୍ରୀ :** ଯେପରି ଅଟେ ସେପରି ବତାଇବା ବଦଳରେ କୌଣସି ବି ପ୍ରକାରେ ଓଲଟା ବତାଇବା, ତାହା ଅବର୍ଣ୍ଣବାଦ କୁହାଯାଏ। ଯେପରି ଅଟେ ସେପରି ତ ନୁହେଁ କିନ୍ତୁ ଉପରୁ ତାହାଠୁ ଓଲଟା। ଯେପରି ଅଟେ ସେପରି ଚିତ୍ରଣ କରିବା, ଭୁଲ କୁ ଭୁଲ ଏବଂ ଠିକ କୁ ଠିକ କହିବା, ତାହା ଅବର୍ଣ୍ଣବାଦ କୁହାଯାଏ ନାହିଁ। କିନ୍ତୁ ଯଦି ସବୁକିଛି ଭୁଲ କହିବା, ତେବେ ଅବର୍ଣ୍ଣବାଦ କୁହାଯାଏ। ପ୍ରତ୍ୟେକ ମନୁଷ୍ୟ ଭିତରେ କିଛି ତ ଭଲ ଥିବ ନା ନଥିବ? ଏବଂ କିଛି ଓଲଟା ବି ଥିବ। କିନ୍ତୁ ତା'ର ସବୁକିଛି

ଓଲଟା କହିବା, ତେବେ ପୁଣି ତାହା ଅବର୍ଣ୍ଣବାଦ କୁହାଯାଏ । 'ଏହି ମାମଲାରେ ଟିକିଏ ଏପରି ଅଟନ୍ତି, କିନ୍ତୁ ଅନ୍ୟ ମାମଲାରେ ବହୁତ ଭଲ', ଏପରି ହେବା ଉଚିତ ।

ଅବର୍ଣ୍ଣବାଦ ଅର୍ଥାତ ଆମେ କାହା ବିଷୟରେ ଜାଣିଥିବା, ତା'ର କିଛି ଗୁଣ ଜାଣିଥିବା, ତଥାପି ତା' ବିରୁଦ୍ଧରେ କହିବା ଏବଂ ଯେଉଁ ଗୁଣ ତା'ଠାରେ ନାହିଁ ସେପରି ଗୁଣର ମଧ୍ୟ ସବୁ କଥା କହିବା, ସେସବୁ ଅବର୍ଣ୍ଣବାଦ । ବର୍ଣ୍ଣବାଦ ଅର୍ଥାତ କ'ଣ ଯେ 'ଯାହା ଅଛି ତାହା କହିବା ଏବଂ ଅବର୍ଣ୍ଣବାଦ ଅର୍ଥାତ ଯାହା ନାହିଁ ତାହା କହିବା ।' ତାହା ତ ଭାରୀ ବିରାଧନା ଅଟେ, ବହୁତ ବଡ଼ ବିରାଧନା ଅଟେ । ସାମାନ୍ୟ ଲୋକଙ୍କ ପାଇଁ କହିଲେ ନିନ୍ଦା କୁହାଯାଏ କିନ୍ତୁ ମହାନ ପୁରୁଷଙ୍କ ପାଇଁ ତ ଅବର୍ଣ୍ଣବାଦ କୁହାଯାଏ । ମହାନ ପୁରୁଷ ଅର୍ଥାତ ଯେଉଁମାନେ ଅର୍ନ୍ତମୁଖ ହୋଇଛନ୍ତି, ସେମାନେ । ମହାନ ପୁରୁଷ ଅର୍ଥାତ ଏହି ବ୍ୟବହାରରେ ମହାନ ଅଟନ୍ତି ସେପରି ନୁହେଁ, ପ୍ରେସିଡେଣ୍ଟ (ରାଷ୍ଟ୍ରପତି) ହୋଇଥିବେ ତାଙ୍କ ପାଇଁ ନୁହେଁ, ଅର୍ନ୍ତମୁଖ ହୋଇଥିବା ପୁରୁଷଙ୍କ ଅବର୍ଣ୍ଣବାଦ କରିବା, ସେଥିରେ ତ ବହୁତ ବିପଦ ! ଅବର୍ଣ୍ଣବାଦରେ ବହୁତ ବିପଦ ଅଛି ! ! ତାହା ତ ବିରାଧନା ଠାରୁ ମଧ୍ୟ ଅଧିକ ଅଟେ ।

**ପ୍ରଶ୍ନକର୍ତ୍ତା :** ଉପଦେଶକ, ସାଧୁ-ଆଚାର୍ଯ୍ୟମାନଙ୍କ ପାଇଁ ଏପରି କହିଛନ୍ତି ନା ?

**ଦାଦାଶ୍ରୀ :** ହଁ, ସେମାନେ ସମସ୍ତେ । ସେ ପଛେ ରାସ୍ତାରେ ଥାଆନ୍ତୁ କି ନଥାନ୍ତୁ, ଜ୍ଞାନ ଥାଉ କି ନଥାଉ, ତାହା ଆମକୁ ଦେଖିବାର ନାହିଁ । ସେମାନେ ଭଗବାନ ମହାବୀରଙ୍କ ଆରାଧକ ଅଟନ୍ତି ନା ! ସେମାନେ ଯାହା ବି କରନ୍ତୁ, ଠିକ ଅବା ଭୁଲ, କିନ୍ତୁ ଭଗବାନ ମହାବୀରଙ୍କ ନାମରେ କରୁଛନ୍ତି ନା ? ସେଥିପାଇଁ ତାଙ୍କର ଅବର୍ଣ୍ଣବାଦ କରିପାରିବା ନାହିଁ ।

**ପ୍ରଶ୍ନକର୍ତ୍ତା :** ଅବର୍ଣ୍ଣବାଦ ଏବଂ ବିରାଧନାରେ କ'ଣ ଅନ୍ତର ?

**ଦାଦାଶ୍ରୀ :** ବିରାଧନା କରିବାବାଲା ତ ଓଲଟା ଯାଏ, ତଳକୁ ଯାଏ, ଅଧୋଗତିରେ ଆଉ ଅବର୍ଣ୍ଣବାଦ କରିବାବାଲା ତ ଯଦି ପ୍ରତିକ୍ରମଣ କରେ ତେବେ ପୁଣି ବାଧା ଆସେ ନାହିଁ, ରେଗ୍ୟୁଲର୍ ହୋଇଯାଏ । କାହାର ଅବର୍ଣ୍ଣବାଦ କରେ, କିନ୍ତୁ ପୁଣି ପ୍ରତିକ୍ରମଣ କରେ ତେବେ ଶୁଦ୍ଧ ହୋଇଯାଏ ।

**ପ୍ରଶ୍ନକର୍ତ୍ତା :** ଅବିନୟ ଏବଂ ବିରାଧନା ବିଷୟରେ ଟିକିଏ ବୁଝାନ୍ତୁ ।

**ଦାଦାଶ୍ରୀ :** ଅବିନୟ, ବିରାଧନା କୁହାଯାଏ ନାହିଁ । ଅବିନୟ ତ ନିମ୍ନ ଷ୍ଟେଜ୍ ଅଟେ ଏବଂ ବିରାଧନା ତ, ସତକୁ ସତ ବିରୁଦ୍ଧରେ ଗଲା କୁହାଯିବ । ଅବିନୟ ଅର୍ଥାତ

ମୋତେ କିଛି ନେବା-ଦେବା ନାହିଁ, ଏପରି । ବିନୟ ନକରିବା, ତାହାର ନାମ ଅବିନୟ ।

**ପ୍ରଶ୍ନକର୍ତ୍ତା :** ଅପରାଧ ମାନେ କ'ଣ ?

**ଦାଦାଶ୍ରୀ :** ଆରାଧନା କରିବାବାଲା ମଣିଷ ଉପରକୁ ଚଢ଼େ ଏବଂ ବିରାଧନା କରିବାବାଲା ତଳକୁ ଯାଏ । କିନ୍ତୁ ଯଦି ଅପରାଧ କରୁଥିବ ତେବେ ଉଭୟ ପକ୍ଷରୁ ମାଡ଼ ଖାଏ । ଅପରାଧ କରିବାବାଲା ନିଜେ ତ ଆଗକୁ ବଢ଼େ ନାହିଁ ଏବଂ କାହାକୁ ବଢ଼ିବାକୁ ମଧ୍ୟ ଦିଏ ନାହିଁ । ସେ ଅପରାଧୀ କୁହାଯାଏ ।

**ପ୍ରଶ୍ନକର୍ତ୍ତା :** ଏବଂ ବିରାଧନାରେ ବି କାହାକୁ ଆଗକୁ ବଢ଼ିବାକୁ ଦିଏ ନାହିଁ ନା ?

**ଦାଦାଶ୍ରୀ :** କିନ୍ତୁ ବିରାଧନାବାଲା ଉତ୍ତମ । କାହାକୁ ଯଦି ଜଣା ପଡ଼ିବ ତେବେ ପୁଣି ସେ କହିବ ନା ଯେ, 'କଣ ଦେଖି ଏପଟେ ଚାଲି ପଡ଼ିଲ ? ଏପଟେ ଅହମଦାବାଦ ପଡୁଥିବ କେଉଁଠି ?' ସେତେବେଳେ ସେ ପଛକୁ ଫେରିପାରେ କିନ୍ତୁ ଅପରାଧୀ ତ ଫେରିବ ବି ନାହିଁ ଏବଂ ଆଗକୁ ବଢ଼ିବ ବି ନାହିଁ । ବିରାଧନାବାଲା ତ ଓଲଟା ଚାଲେ ସେଥିପାଇଁ ପଡ଼ିଯାଏ ନା !

**ପ୍ରଶ୍ନକର୍ତ୍ତା :** କିନ୍ତୁ ବିରାଧନାବାଲାକୁ ପଛକୁ ଫେରିବାର ମଉକା ଅଛି କି ?

**ଦାଦାଶ୍ରୀ :** ହଁ, ପଛକୁ ଫେରିବାର ମଉକା ଅଛି ନା !

**ପ୍ରଶ୍ନକର୍ତ୍ତା :** ଅପରାଧବାଲାକୁ ପଛକୁ ଫେରିବାର ମଉକା ଅଛି କି ?

**ଦାଦାଶ୍ରୀ :** ସେ ତ ପଛକୁ ମଧ୍ୟ ଫେରି ପାରିବ ନାହିଁ ଏବଂ ଆଗକୁ ମଧ୍ୟ ବଢ଼ି ପାରିବ ନାହିଁ । ତା'ର କୌଣସି କକ୍ଷା ହିଁ ନାହିଁ । ଆଗକୁ ବଢ଼େ ନାହିଁ ଏବଂ ପଛକୁ ଫେରେ ନାହିଁ, ଯେତେବେଳେ ଦେଖ ତହିଁ କୁ ତହିଁ, ତା'ର ନାମ ଅପରାଧୀ ।

**ପ୍ରଶ୍ନକର୍ତ୍ତା :** ଅପରାଧର ବ୍ୟାଖ୍ୟା କ'ଣ ?

**ଦାଦାଶ୍ରୀ :** ବିରାଧନା ବିନା ଇଚ୍ଛାରେ ହୁଏ ଏବଂ ଅପରାଧ ଇଚ୍ଛାପୂର୍ବକ ହୁଏ ।

**ପ୍ରଶ୍ନକର୍ତ୍ତା :** ତାହା କିପରି, ଦାଦାଜୀ ?

**ଦାଦାଶ୍ରୀ :** ଜିଦିରେ ଅଟଳ ଥିବ ତେବେ ଅପରାଧ କରି ବସେ । ବୁଝେ ଯେ ଏଠାରେ ବିରାଧନା କରିବା ପରି ନୁହେଁ, ତଥାପି ବିରାଧନା କରେ । ବୁଝୁଥିବ ତଥାପି ବିରାଧନା କରେ ତାହା ଅପରାଧରେ ଯାଏ । ବିରାଧନା କରିବାବାଲା ମୁକୁଳିଯାଏ କିନ୍ତୁ ଅପରାଧ କରିବାବାଲା ମୁକୁଳେ ନାହିଁ । ବହୁତ ଭାରୀ ଅହଂକାର ହୋଇଥିଲେ, ସେ

ଅପରାଧ କରି ବସେ । ସେଥିପାଇଁ ଆମକୁ ନିଜକୁ ନିଜେ କହିବାକୁ ପଡ଼େ ଯେ, 'ଭାଇ, ତୁ ତ ପାଗଳ ଅଟୁ, ବିନା କାରଣରେ (ଅହଂକାରର) ପାଓ୍ୱାର୍ ନେଇ ଚାଲୁଛୁ । ଏହା ତ ଲୋକେ ଜାଣି ନାହାନ୍ତି କିନ୍ତୁ ମୁଁ ଜାଣିଛି ଯେ ତୁ କ'ଣ ? ତୁ ତ ମେଣ୍ଟାଲ୍ ଅଟୁ ।' ଏପରି ଆମକୁ ଚିକିତ୍ସା କରିବାକୁ ପଡ଼େ । ପ୍ଲସ୍ ଏବଂ ମାଇନସ୍ କରିବାକୁ ପଡ଼େ, ଯଦି କେବଳ ଗୁଣାକାର କରିବା ତେବେ କେଉଁଠି ପହଞ୍ଚିବା ? ସେଥିପାଇଁ ଆମକୁ ଭାଗ କରିବାକୁ ହେବ । ପ୍ଲସ୍-ମାଇନସ୍ ନେଚର୍ ର ଅଧୀନ ଅଟେ, ଯେବେକି ଗୁଣାକାର-ଭାଗାକାର ମନୁଷ୍ୟର ହାତରେ ଅଛି । ଏହି ଅହଂକାର ଦ୍ୱାରା ସାତ ର ଗୁଣାକାର ଯଦି ହୋଇଥିବ ତେବେ ସାତରେ ଭାଗ କରିଦେବା, ଅର୍ଥାତ ନିଃଶେଷ ହୋଇଗଲା !

**ପ୍ରଶ୍ନକର୍ତ୍ତା :** କାହାର ନିନ୍ଦା କରିବା, ତାହାର ଗଣତି କେଉଁଥିରେ ହେବ ?

**ଦାଦାଶ୍ରୀ :** ନିନ୍ଦା ବିରାଧନା କୁହାଯାଏ କିନ୍ତୁ ପ୍ରତିକ୍ରମଣ କଲେ ଧୋଇଯାଏ । ତାହା ଅବର୍ଣ୍ଣବାଦ ସମାନ ଅଟେ । ସେଥିପାଇଁ ତ ମୁଁ କହେ ଯେ କାହାର ନିନ୍ଦା କରିବ ନାହିଁ । ତଥାପି ଲୋକେ ପଛରେ ନିନ୍ଦା କରନ୍ତି । ଆରେ, ନିନ୍ଦା କରିବା ଉଚିତ ନୁହେଁ । ଏ ବାତାବରଣ ପୁରା ପରମାଣୁରେ ହିଁ ଭରା, ସେଥିପାଇଁ ସବୁକିଛି ତା'କୁ ପହଞ୍ଚିଯାଏ । କାହା ବିଷୟରେ ଗୋଟିଏ ବି ଦାୟିତ୍ୱହୀନ ଶବ୍ଦ କହିପାରିବା ନାହିଁ ଏବଂ କହିବାର ଅଛି ତେବେ କିଛି ଭଲ କୁହ । କୀର୍ତ୍ତି ବଖାଣ କର, ଅପକୀର୍ତ୍ତି ବଖାଣ କରନାହିଁ ।

ଅତଃ କାହାର ନିନ୍ଦାରେ ପଡ଼ିବ ନାହିଁ । ପ୍ରଶଂସା କରିପାରୁ ନାହଁ ତେବେ ଅସୁବିଧା ନାହିଁ, କିନ୍ତୁ ନିନ୍ଦା କରିବ ନାହିଁ । ମୁଁ କହୁଛି ଯେ ନିନ୍ଦା କରିବାରେ ଆମକୁ କ'ଣ ଫାଇଦା ? ସେଥିରେ ତ ବହୁତ ବଡ଼ କ୍ଷତି । ଏହି ଜଗତରେ ଯଦି କିଛି ଭୟଙ୍କର କ୍ଷତି ଥାଏ ତେବେ ତାହା ନିନ୍ଦା କରିବାରେ ଅଛି । ସେଥିପାଇଁ କାହାର ବି ନିନ୍ଦା କରିବା ପାଇଁ କୌଣସି କାରଣ ନ ରହିବା ଉଚିତ ।

ଏଠାରେ ନିନ୍ଦା ପରି ଜିନିଷ ହିଁ ନାହିଁ । ମୁଁ ବୁଝିବା ପାଇଁ ଏ କଥା କହୁଛି ଯେ କ'ଣ ଠିକ ଏବଂ କ'ଣ ଭୁଲ ! ଭଗବାନ କ'ଣ କହିଛନ୍ତି ? ଯେ ଖରାପ କୁ ଖରାପ ଜାଣ ଏବଂ ଭଲକୁ ଭଲ ଜାଣ । କିନ୍ତୁ ଖରାପ ଜାଣିବା ସମୟରେ ତା' ଉପରେ କିଞ୍ଚିତମାତ୍ର ଦ୍ୱେଷ ନହେବା ଉଚିତ ଏବଂ ଭଲ ଜାଣିବା ସମୟରେ ତା' ଉପରେ କିଞ୍ଚିତମାତ୍ର ରାଗ୍ (ଆସକ୍ତି) ନହେବା ଉଚିତ । ଖରାପକୁ ଖରାପ ନ ବୁଝିବା ତେବେ ଭଲକୁ ଭଲ ବୁଝିପାରିବା ନାହିଁ । ସେଥିପାଇଁ ମୁଁ ବିସ୍ତୃତ ରୂପେ କଥା କହୁଛି । ଜ୍ଞାନୀଙ୍କ ପାଖରେ ହିଁ ଜ୍ଞାନ ବୁଝାପଡ଼େ ।

## ଅଭାବ, ତିରସ୍କାର ନ କରେ...

**ପ୍ରଶ୍ନକର୍ତ୍ତା :** ୪. ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମା ପ୍ରତି କିଞ୍ଚିତମାତ୍ର ବି ଅଭାବ, ତିରସ୍କାର କେବେ ବି ନ କରେ, ନ କରାଏ, ଅଥବା କର୍ତ୍ତା ପ୍ରତି ଅନୁମୋଦନ ନ କରେ, ଏପରି ପରମ ଶକ୍ତି ଦିଅନ୍ତୁ ।

**ଦାଦାଶ୍ରୀ :** ହଁ, ଠିକ କଥା । ଆମକୁ ଯଦି କାହା ପ୍ରତି ଅଭାବ ହେବ, ମାନି ନିଅ ଯେ ତୁମେ ଅଫିସ୍‌ରେ ବସିଛ ଏବଂ କେହି ଆସିଲା ତେବେ ତୁମକୁ ତା'ପ୍ରତି ଅଭାବ ହେଲା, ତିରସ୍କାର ହେଲା, ତେବେ ପୁଣି ତୁମକୁ ମନରେ ବିଚାର କରି ତାହାର ପଶ୍ଚାତାପ କରିବା ଉଚିତ ଯେ ଏପରି ନହେବା ଉଚିତ ।

ଏହି ତିରସ୍କାରରୁ କେବେ ବି ମୁକୁଳି ହେବ ନାହିଁ । ସେଥିରେ ତ ନିରୋଳା ବୈର ହିଁ ବନ୍ଧାହୁଏ । କାହାରି ସହ ବି ଯଦି ତିଳେମାତ୍ର ବି ତିରସ୍କାର ହେବ, ଆରେ ଏହି ନିର୍ଜୀବ ସାଥିରେ ବି ଯଦି ତିରସ୍କାର ହେବ ତେବେ ମଧ୍ୟ ତୁମେ ମୁକୁଳି ପାରିବ ନାହିଁ । ଅର୍ଥାତ କାହା ପ୍ରତି ତିଳେମାତ୍ର ବି ତିରସ୍କାର ଚଳିବ ନାହିଁ । ଆଉ ଯେପର୍ଯ୍ୟନ୍ତ କାହା ପାଇଁ ତିରସ୍କାର ହେବ, ସେପର୍ଯ୍ୟନ୍ତ ବୀତରାଗ ହୋଇପାରିବା ନାହିଁ । ବୀତରାଗ ହେବାକୁ ପଡ଼ିବ, ତେବେଯାଇ ମୁକୁଳି ହେବ ।

## କଠୋର-*ତଂତୀଲୀ* ଭାଷା ନ କହେ...

**ପ୍ରଶ୍ନକର୍ତ୍ତା :** ୫. ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମା ସହ କେବେ ବି କଠୋର ଭାଷା, *ତଂତୀଲୀ* ଭାଷା ନ କହେ, (ଅନ୍ୟଦ୍ୱାରା) ନ କୁହାଏ ଅଥବା କହିବା ପାଇଁ ଅନୁମୋଦନ ନ କରେ, ଏପରି ପରମ ଶକ୍ତି ଦିଅନ୍ତୁ । କେହି କଠୋର ଭାଷା, *ତଂତୀଲୀ* ଭାଷା କହେ ତେବେ ମୋତେ ମୃଦୁ-ଋଜୁ ଭାଷା କହିବା ପାଇଁ ପରମ ଶକ୍ତି ଦିଅନ୍ତୁ ।

**ଦାଦାଶ୍ରୀ :** କଠୋର ଭାଷା କହିବା ଉଚିତ ନୁହେଁ । କାହା ସହିତ ଯଦି କଠୋର ଭାଷା ବାହାରି ଗଲା ଏବଂ ତା'କୁ ଖରାପ ଲାଗିଲା ତେବେ ଆମେ ତା'କୁ ପ୍ରତ୍ୟକ୍ଷ କହିବା ଉଚିତ ଯେ 'ଭାଇ, ମୋ ଦ୍ୱାରା ଭୁଲ ହୋଇଗଲା, କ୍ଷମା ମାଗୁଛି ।' ଆଉ ଯଦି ଏପରି ପ୍ରତ୍ୟକ୍ଷରେ ନ କହିପାରିବ ତେବେ ପୁଣି ଭିତରେ ପଶ୍ଚାତାପ କରିବ ଯେ ଏପରି କହିବା ଉଚିତ ନୁହେଁ ।

**ପ୍ରଶ୍ନକର୍ତ୍ତା :** ଆଉ ପୁଣି ଆମକୁ ବିଚାର କରିବା ଉଚିତ ଯେ ଏପରି କେବେ ନ କହେ ।

**ଦାଦାଶ୍ରୀ :** ହଁ, ଏପରି ବିଚାର କରିବା ଉଚିତ ଏବଂ ପଶ୍ଚାତାପ କରିବା ଉଚିତ । ଯଦି ପଶ୍ଚାତାପ କରିବା ତେବେଯାଇ ତାହା ବନ୍ଦ ହୁଏ, ନହେଲେ ଖାଲି ଏମିତି ବନ୍ଦ ହୁଏ ନାହିଁ । କେବଳ କହିଲେ ବନ୍ଦ ହୁଏ ନାହିଁ ।

**ପ୍ରଶ୍ନକର୍ତ୍ତା :** ମୃଦୁ-ଋଜୁ ଭାଷା ମାନେ କ'ଣ ?

**ଦାଦାଶ୍ରୀ :** ଋଜୁ ମାନେ ସରଳ ଏବଂ ମୃଦୁ ମାନେ ନମ୍ରତାପୂର୍ଣ୍ଣ । ଅତ୍ୟନ୍ତ ନମ୍ରତାପୂର୍ଣ୍ଣ ହୁଏ ତେବେ ମୃଦୁ କୁହାଯାଏ । ଅର୍ଥାତ ଯଦି ସରଳ ଏବଂ ନମ୍ରତାପୂର୍ଣ୍ଣ ଭାଷା ଆମେ କହିବା ଏବଂ ଏପରି ଶକ୍ତି ମାଗିବା, ତେବେ ଏପରି କରୁ-କରୁ ସେ ଶକ୍ତି ଆସିବ । ତୁମେ କଠୋର ଭାଷା କହିଲ ଏବଂ ପୁଅକୁ ଖରାପ ଲାଗିଲା ତେବେ ତାହାର ପଶ୍ଚାତାପ କରିବ । ଏବଂ ପୁଅକୁ ମଧ୍ୟ କହିବ ଯେ, 'ମୁଁ କ୍ଷମା ମାଗୁଛି । ଏବେ ଆଉ ଏପରି କହିବି ନାହିଁ ।' ଏହା ହିଁ ହେଉଛି ବାଣୀ ସୁଧାରିବାର ରାସ୍ତା ଏବଂ 'ଏହି' ଗୋଟିଏ ହିଁ କଲେଜ ଅଛି ।

**ପ୍ରଶ୍ନକର୍ତ୍ତା :** କଠୋର ଭାଷା, *ତଂତୀଲୀ* ଭାଷା ତଥା ମୃଦୁତା-ଋଜୁତା, ଏମାନଙ୍କ ମଧ୍ୟରେ କ'ଣ ପ୍ରଭେଦ ?

**ଦାଦାଶ୍ରୀ :** ଅନେକ ଲୋକ କଠୋର ଭାଷା କହନ୍ତି ଯେ, 'ତୁ ଅଯୋଗ୍ୟ, ବଦମାଶ, ଚୋର ।' ଯେଉଁ ଶବ୍ଦ ଆମେ ଶୁଣି ନଥିବା, ଏପରି କଠୋର ବଚନ ଶୁଣିବା ମାତ୍ରେ ଆମ ହୃଦୟ ସ୍ତମ୍ଭିତ ହୋଇଯାଏ । କଠୋର ଭାଷା ଆଦୌ ପ୍ରିୟ ଲାଗେ ନାହିଁ । ଓଲଟା ମନରେ ପ୍ରଶ୍ନ ଉଠେ ଯେ ଏସବୁ କ'ଣ ?!! କଠୋର ଭାଷା ଅହଂକାରୀ ହୋଇଥାଏ ।

ଆଉ *ତଂତୀଲୀ* ଭାଷା ମାନେ କ'ଣ ? ସ୍ପର୍ଦ୍ଧାରେ ଯେପରି *ତଂତ୍* ଥାଏ ନା ? 'ଦେଖ, ମୁଁ କେତେ ବଢ଼ିଆ ରୋଷେଇ କଲି ଏବଂ ତା'କୁ ତ ରୋଷେଇ ଜଣା ହିଁ ନାହିଁ !' ଏପରି *ତଂତ୍* ହୋଇଯାଏ, ସ୍ପର୍ଦ୍ଧାରେ ଆସିଯାଏ । ସେ *ତଂତୀଲୀ* ଭାଷା (ଶୁଣିବାରେ) ବହୁତ ଖରାପ ଲାଗେ ।

କଠୋର ଏବଂ *ତଂତୀଲୀ* ଭାଷା କହିବା ଉଚିତ ନୁହେଁ । ଭାଷାର ସମସ୍ତ ଦୋଷ ଏହି ଦୁଇ ଶବ୍ଦରେ ସମାହିତ । ସେଥିପାଇଁ ଫୁରସତ୍ ସମୟରେ 'ଦାଦା ଭଗବାନ' ଙ୍କ ଠାରୁ ଆମେ ଶକ୍ତି ମାଗିଚାଲିବା । କର୍କଶ କହିଦିଆଯାଉଥିବ ତେବେ ତାହାର ପ୍ରତିପକ୍ଷୀ ଶକ୍ତି ମାଗିବ ଯେ ମୋତେ ଶୁଦ୍ଧବାଣୀ କହିବା ପାଇଁ ଶକ୍ତି ଦିଅ, ସ୍ୟାଦ୍‌ବାଦ ବାଣୀ କହିବା ପାଇଁ ଶକ୍ତି ଦିଅ, ମୃଦୁ-ଋଜୁ ଭାଷା କହିବା ପାଇଁ ଶକ୍ତି ଦିଅ, ଏପରି ମାଗିଚାଲିବ । ସ୍ୟାଦ୍‌ବାଦ ବାଣୀ ଅର୍ଥାତ କାହାରିକୁ ଦୁଃଖ ନହୁଏ ଏପରି ବାଣୀ ।

## ନିର୍ବିକାର ରହିବା ପାଇଁ ଶକ୍ତି ଦିଅ

**ପ୍ରଶ୍ନକର୍ତ୍ତା :** ୬. 'ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମା ପ୍ରତି ସ୍ତ୍ରୀ, ପୁରୁଷ ଅଥବା ନପୁଂସକ, କୌଣସି ବି ଲିଙ୍ଗଧାରୀ ହେଉ, ତେବେ ତାଙ୍କ ସମ୍ବନ୍ଧରେ କିଞ୍ଚିତମାତ୍ର ବି ବିଷୟ-ବିକାର ସମ୍ବନ୍ଧୀ ଦୋଷ, ଇଚ୍ଛା, ଚେଷ୍ଟା ଅଥବା ବିଚାର ସମ୍ବନ୍ଧୀ ଦୋଷ ନ କରେ, ନ କରାଏ ଅଥବା କର୍ତ୍ତା ପ୍ରତି ଅନୁମୋଦନ ନ କରେ, ଏପରି ପରମ ଶକ୍ତି ଦିଅନ୍ତୁ । ମୋତେ ନିରନ୍ତର ନିର୍ବିକାର ରହିବା ପାଇଁ ପରମ ଶକ୍ତି ଦିଅନ୍ତୁ ।'

**ଦାଦାଶ୍ରୀ :** ତୁମ ଦୃଷ୍ଟି ବିଗିଡ଼ିବା ମାତ୍ରେ ତୁରନ୍ତ ଭିତରେ ଚନ୍ଦୁଭାଇ (ଚନ୍ଦୁଭାଇ ସ୍ଥାନରେ ପାଠକେ ସ୍ୱୟଂକୁ ବୁଝନ୍ତୁ) କୁ କହିବ, 'ଏପରି କରିବା ଉଚିତ ନୁହେଁ । ଏପରି ଆମକୁ ଶୋଭା ଦେଉ ନାହିଁ । ଆମେ ଖାନ୍‌ଦାନୀ କ୍ୱାଲିଟୀବାଲା (ଗୁଣବାଲା) । ଯେପରି ଆମ ଭଉଣୀ ସେହିପରି ସେ ମଧ୍ୟ ଅନ୍ୟର ଭଉଣୀ ଅଟେ । ଆମ ଭଉଣୀ ଉପରେ କାହାର କୁଦୃଷ୍ଟି ହେବ ତେବେ ଆମକୁ କେତେ ଖରାପ ଲାଗିବ ! ସେହିପରି ଅନ୍ୟମାନଙ୍କୁ ବି ଦୁଃଖ ହେବ ନା ନାହିଁ ? ଏଣୁ ଏହା ଆମକୁ ଶୋଭା ଦେଉ ନାହିଁ ।' ଅର୍ଥାତ ଦୃଷ୍ଟି ଯଦି ବିଗିଡ଼େ ତେବେ ପଶ୍ଚାତାପ କରିବା ଉଚିତ ।

**ପ୍ରଶ୍ନକର୍ତ୍ତା :** ଚେଷ୍ଟା, ଏହାର ଅର୍ଥ କ'ଣ ?

**ଦାଦାଶ୍ରୀ :** ଦେହଦ୍ୱାରା ହେଉଥିବା ସମସ୍ତ କ୍ରିୟା, ଯାହାର ଫଟୋ ଉଠାଯାଇପାରେ ସେ ସବୁ ଚେଷ୍ଟା କୁହାଯାଏ । ତୁମେ ଥଟ୍ଟା କରୁଥିବ, ତାହା ଚେଷ୍ଟା ଅଟେ । ଏମିତି ହସୁଥିବ ତାହା ମଧ୍ୟ ଚେଷ୍ଟା କୁହାଯାଏ ।

**ପ୍ରଶ୍ନକର୍ତ୍ତା :** ଅର୍ଥାତ କାହାର ମଜା ଉଡ଼ାଇବା, କାହାର ଉପହାସ କରିବା ତାହା ଚେଷ୍ଟା କୁହାଯାଏ ?

**ଦାଦାଶ୍ରୀ :** ହଁ, ଏପରି ବହୁତ ପ୍ରକାରର ଚେଷ୍ଟା ଅଛି ।

**ପ୍ରଶ୍ନକର୍ତ୍ତା :** ତେବେ ଏହି ବିଷୟ-ବିକାର ସମ୍ବନ୍ଧୀ ଚେଷ୍ଟା କିପରି ଅଟେ ?

**ଦାଦାଶ୍ରୀ :** ବିଷୟ-ବିକାର ବାବଦରେ ବି ଦେହ ଏପରି ଯେଉଁ-ଯେଉଁ କ୍ରିୟା କରେ, ଯାହାର ଫଟୋ ଉଠାଯାଇପାରେ, ସେସବୁ ଚେଷ୍ଟା କୁହାଯାଏ । ଯେଉଁ କ୍ରିୟା ଦେହରୁ ନୁହେଁ, ତାହାକୁ ଚେଷ୍ଟା କୁହାଯାଏ ନାହିଁ । କେବେ-କେବେ ଇଚ୍ଛା ହୁଏ, ମନରେ ବିଚାର ଆସେ, କିନ୍ତୁ ତାହା ଚେଷ୍ଟା ନୁହେଁ । ବିଚାର ସମ୍ବନ୍ଧୀ ଦୋଷ ମନର ଦୋଷ ଅଟେ ।

'ମୋତେ ନିରନ୍ତର ନିର୍ବିକାର ରହିବା ପାଇଁ ଶକ୍ତି ଦିଅନ୍ତୁ ।' ଏତିକି ତୁମେ 'ଦାଦାଜୀ' ଙ୍କ ଠାରୁ ମାଗିବ । 'ଦାଦାଜୀ' ତ ଦାନେଶ୍ୱର ଅଟନ୍ତି ।

## ରସରେ ଲୁବ୍ଧତା ନ ହେଉ...

**ପ୍ରଶ୍ନକର୍ତ୍ତା :** ୭. 'ହେ ଦାଦା ଭଗବାନ! ମୋତେ, କୌଣସି ବି ରସରେ ଲୁବ୍ଧତା ନ ହେଉ, ଏପରି ଶକ୍ତି ଦିଅନ୍ତୁ । ସମରସୀ ଆହାର ନେବା ପାଇଁ ପରମ ଶକ୍ତି ଦିଅନ୍ତୁ ।'

**ଦାଦାଶ୍ରୀ :** ଭୋଜନ କରିବା ସମୟରେ ତୁମକୁ କେଉଁ ତରକାରୀ, ଯେପରିକି ଟମାଟୋ ର ହିଁ ରୁଚି ଥିବ, ଯାହା ତୁମକୁ ପୁଣି ମନେ ପଡୁଥିବ, ତେବେ ତାହା ଲୁବ୍ଧତା କୁହାଯାଏ । ଟମାଟୋ ଖାଇବାରେ ଅସୁବିଧା ନାହିଁ କିନ୍ତୁ ପୁଣି ମନେ ନପଡ଼ିବା ଉଚିତ । ନଚେତ ଆମର ସମସ୍ତ ଶକ୍ତି ଲୁବ୍ଧତାରେ ଚାଲିଯିବ । ସେଥିପାଇଁ ଆମକୁ କହିବା ଉଚିତ ଯେ, 'ଯାହା ବି ଆସିବ ମୋତେ ମଞ୍ଜୁର ।' କୌଣସି ବି ପ୍ରକାରର ଲୁବ୍ଧତା ନ ହେବା ଉଚିତ । ଥାଳିରେ ଯାହା ଖାଇବା ଆସେ, ଆମ୍ରରସ ଏବଂ ରୁଟି ଆସେ, ତେବେ ଆରାମରେ ଖାଇବ । ସେଥିରେ କୌଣସି ପ୍ରକାର ଅସୁବିଧା ନାହିଁ । କିନ୍ତୁ ଯାହା କିଛି ଆସିବ ତାହାକୁ ସ୍ୱୀକାର କରିବ, ଅନ୍ୟ କିଛି ମନେ ପକାଇବ ନାହିଁ ।

**ପ୍ରଶ୍ନକର୍ତ୍ତା :** ସମରସୀ ମାନେ କ'ଣ ?

**ଦାଦାଶ୍ରୀ :** ସମରସୀ ମାନେ ପୂରଣପୁରି (ଡାଲିବାଲା ମିଠା ପୁରି), ଭାତ-ଡାଲି, ତରକାରୀ ସବୁ ଖାଅ, ମାତ୍ର କେବଳ ପୂରଣପୁରି ଠୁସି-ଠୁସି ଖାଇବା ଉଚିତ ନୁହେଁ ।

କିଛି ଲୋକ ମିଠା ଖାଇବା ଛାଡ଼ି ଦିଅନ୍ତି, ସେତେବେଳେ କ'ଣ ମିଠା ତାଙ୍କ ଉପରେ ଦାବି କରିବ ଯେ ମୋ ସହିତ ତୋତେ କ'ଣ ଅସୁବିଧା ? ଦୋଷ ମଇଁଷିର ଏବଂ ଦଣ୍ଡ ମଇଁଷି ଚରାଳିକୁ! ଆରେ, ଜିଭର କ'ଣ ଦୋଷ ? ଦୋଷ ତ ମଇଁଷିର । ମଇଁଷିର ଦୋଷ ଅର୍ଥାତ ଅଜ୍ଞାନତାର ଦୋଷ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ସମରସୀ ଭୋଜନ ଅର୍ଥାତ କ'ଣ ? ସେଥିରେ ଭାବର ସମାନତା କିପରି ରହେ ?

**ଦାଦାଶ୍ରୀ :** ତୁମ ସମାଜରେ ଯେପରି ଭୋଜନ ବନାନ୍ତି, ତାହା ତୁମ 'ସମାଜ'ର ରୁଚି ଅନୁସାରେ ସମରସୀ ଲାଗୁ, ସେପରି ଭୋଜନ ବନାନ୍ତି । ଏବଂ ଅନ୍ୟ ଲୋକଙ୍କୁ ତୁମ 'ସମାଜ'ର ଖୁଆଇବା ତେବେ ସେମାନଙ୍କୁ ସମରସୀ ଲାଗିବ ନାହିଁ, କାରଣ

ତୁମେମାନେ ଲଙ୍କା ଇତ୍ୟାଦି କମ ଖାଅ । ପ୍ରତ୍ୟେକ ଜାତିର ସମରସୀ ଭୋଜନ ଅଲଗା-ଅଲଗା ହୋଇଥାଏ । ସମରସୀ ଭୋଜନ ଅର୍ଥାତ ଟେଷ୍ଟଫୁଲ୍, ସ୍ୱାଦିଷ୍ଟ ଭୋଜନ । ଲଙ୍କା ବେଶୀ ନୁହେଁ, ଅମୁକ ବେଶୀ ନୁହଁ, ସବୁ ଉଚିତ ମାତ୍ରାରେ ପଡ଼ିଥିବ, ଏପରି । କେହି କହେ ଯେ, 'ମୁଁ ତ କେବଳ କ୍ଷୀର ପିଇ ଚଳାଇ ନେବି ।' ଏହା ସମରସୀ ଆହାର କୁହାଯାଏ ନାହିଁ । ସମରସୀ ମାନେ ଛଅ ପ୍ରକାରର ରସ ସାଥିରେ ମିଶାଇ ଖାଅ, ଟେଷ୍ଟଫୁଲ୍ ବନାଇ ଖାଅ । ଅନ୍ୟ କିଛି ପିତା ଯଦି ନ ଖାଇପାର ତେବେ କଲରା ଖାଅ, କାଙ୍କଡ଼ ଖାଅ, ମେଥୀ ଖାଅ କିନ୍ତୁ ପିତା ବି ଖାଇବା ଉଚିତ । ପିତା ଖାଉ ନାହାନ୍ତି ସେଥିପାଇଁ ତ ସବୁ ରୋଗ ହେଉଛି । ଏଣୁ ପୁଣି କ୍ୱିନାଇନ୍ (ପିତା ଔଷଧ) ଖାଇବାକୁ ପଡ଼େ । ସେହି ରସର ଅଭାବ ହେବାଦ୍ୱାରା ଏହି ଅସୁବିଧା ହୁଏ । ଅର୍ଥାତ ସବୁ ରସ ନେବା ଉଚିତ ।

**ପ୍ରଶ୍ନକର୍ତ୍ତା :** ତାହାର ଅର୍ଥ ଏହା ଯେ ସମରସୀ ଖାଇବା ପାଇଁ ଶକ୍ତି ମାଗିବୁ ଯେ ହେ ଦାଦା ଭଗବାନ ! ମୁଁ ସମରସୀ ଆହାର ନେଇପାରେ ଏପରି ଶକ୍ତି ଦିଅନ୍ତୁ ?

**ଦାଦାଶ୍ରୀ :** ହଁ, ତୁମେ ଏହି ଶକ୍ତି ମାଗିବ । ତୁମ ଭାବନା କ'ଣ ? ସମରସୀ ଆହାର ନେବା ପାଇଁ ତୁମର ଭାବନା ହେଲା, ତାହା ହିଁ ତୁମର ପୁରୁଷାର୍ଥ । ଏବଂ ମୁଁ ଶକ୍ତି ଦେବି, ଏହାଦ୍ୱାରା ତୁମ ପୁରୁଷାର୍ଥ ପରିପକ୍ୱ ହୋଇଗଲା ।

**ପ୍ରଶ୍ନକର୍ତ୍ତା :** କୌଣସି ବି ରସରେ ଲୁବ୍ଧତା ନ ହେବା ଉଚିତ, ତାହା ମଧ୍ୟ ଠିକ ?

**ଦାଦାଶ୍ରୀ :** ହଁ, ଅର୍ଥାତ କାହାକୁ ଏପରି ଆଦୌ ଲାଗିବା ଉଚିତ ନୁହେଁ ଯେ ମୋତେ ଖଟ୍ଟା ବିନା ଅନ୍ୟ କିଛି ରୁଚିକର ଲାଗେ ନାହଁ । କିଛି ଲୋକ କହନ୍ତି ଯେ, 'ଆମକୁ ମିଠା ନ ଖାଇଲେ ଭଲ ଲାଗେ ନାହିଁ ।' ତେବେ ରାଗର କ'ଣ ଦୋଷ ? କିଛି କହନ୍ତି, 'ଆମକୁ ମିଠା ରୁଚିକର ଲାଗେ ନାହିଁ, କେବଳ ରାଗ ହିଁ ଦରକାର ।' ଏ ସବୁ ସମରସୀ କୁହାଯାଏ ନାହିଁ । ସମରସୀ ମାନେ ସବୁ 'ଏକ୍ସେପ୍ଟେଡ଼ (ସ୍ୱୀକାର୍ଯ୍ୟ)', କମ-ବେଶୀ ମାତ୍ରାରେ କିନ୍ତୁ ସବୁ ଏକ୍ସେପ୍ଟେଡ଼ ।

**ପ୍ରଶ୍ନକର୍ତ୍ତା :** ସମରସୀ ଆହାର ଏବଂ ଜ୍ଞାନ, ଉଭୟଙ୍କ ମଧ୍ୟରେ କି କନେକ୍ସନ ? ଜ୍ଞାନ ଜାଗୃତିରେ ଯେଉଁ ଆହାର ସମରସୀ ଆହାର ହୋଇନଥିବ ତାହା ନେଇ ପାରିବୁ ନାହିଁ ?

**ଦାଦାଶ୍ରୀ :** ସମରସୀ ଆହାର ପାଇଁ ତ ଏପରି ଅଟେ ଯେ ଆମ (ଜ୍ଞାନପ୍ରାପ୍ତ) ମହାତ୍ମାଙ୍କ ପାଇଁ ତ ଏବେ 'ଯାହା ହେଲା ତାହା ବ୍ୟବସ୍ଥିତ' ଅଟେ, ପୁଣି ସେମାନଙ୍କୁ

କ'ଣ ଖାଇବା ଏବଂ କ'ଣ ନ ଖାଇବା, ତାହାର ଝଗଡା କେଉଁଠି ରହିଲା ? ଏହା ତ ବାହାରର ଲୋକଙ୍କୁ ବତାଇଛି ଏବଂ ଆମ ମହାତ୍ମାଙ୍କୁ ମଧ୍ୟ କିଛି ବିଚାରରେ ତ ଆସିବ ଯେ ଯଥା ସମ୍ଭବ ସମରସୀ ଆହାର ନେବା ଉଚିତ । ମୁଁ ମଧ୍ୟ କହେ ଯେ 'ଭାଇ, ଅଳ୍ପ ଲଙ୍କା ତ ଖାଇବା ଉଚିତ ଏବଂ ପରେ ଏହା ମଧ୍ୟ କହେ ଯେ କାଶର ଔଷଧ ଖାଉଛି ! ପୁଣି ଯାହାର ଚିକିତ୍ସା ହୁଏ ତାହା ମଧ୍ୟ 'ମୁଁ ଜାଣେ', କାରଣ ଏହା ପ୍ରକୃତି ଅଟେ ନା !'

## ପ୍ରକୃତିର ଗୁଣାକାର-ଭାଗାକାର

**ପ୍ରଶ୍ନକର୍ତ୍ତା :** କ'ଣ ପ୍ରକୃତି ସମରସୀ ହେବା ଉଚିତ ?

**ଦାଦାଶ୍ରୀ :** ପ୍ରକୃତି ମାନେ କ'ଣ ? ତେରରେ ଗୁଣା ହୋଇଥିବା ଜିନିଷକୁ ଯଦି ତେର ଦ୍ୱାରା ଭାଗ କରିବା ତେବେ ପ୍ରକୃତି ପୂରା ହେବ । ଏବେ କେଉଁ ସତରରେ ଗୁଣା ହୋଇଥିବା ଜିନିଷକୁ ତେର ଦ୍ୱାରା ଭାଗ କରିବା ତେବେ କ'ଣ ହେବ ? ସେଥିପାଇଁ ମୁଁ ଅଲଗା ପ୍ରକାରର ଗୁଣାକାର କଲି ।

**ପ୍ରଶ୍ନକର୍ତ୍ତା :** ଅର୍ଥାତ ତେରରେ ଯାହା ଗୁଣା ହୋଇଥିବ ତାହାକୁ ତେର ଦ୍ୱାରା ଭାଗ କରିବାର ଅଛି ?

**ଦାଦାଶ୍ରୀ :** ଏପରି କରିବା ତେବେ ନିଃଶେଷ ହେବ ନା !

**ପ୍ରଶ୍ନକର୍ତ୍ତା :** ଏହାର ଉଦାହରଣ କ'ଣ ନେଇପାରିବା ?

**ଦାଦାଶ୍ରୀ :** ପ୍ରକୃତି ଅର୍ଥାତ ପୂର୍ବରୁ ଯେଉଁ ଭାବ କରିଥିଲେ, ତାହା କେଉଁ ଆଧାରରେ କଲେ ନା ଯେଉଁ ଅନ୍ୟ ସବୁ ଆହାର ଖାଇଲେ ସେହି ଆଧାରରେ ଭାବ କଲେ । ଏବେ ସେହି ଭାବକୁ ତେରରେ ଗୁଣା କଲେ । ଏବେ ଯଦି ସେହି ଭାବକୁ ଉଡ଼ାଇ ଦେବାର ଥିବ ତେବେ ତେର ଦ୍ୱାରା ଭାଗ କରିବା ଦ୍ୱାରା ନିଃଶେଷ ହେବ । ଏବଂ ପୁଣି ନୂଆ ଭାବ ଉତ୍ପନ୍ନ ହେବାକୁ ଦେଲେ ନାହିଁ ତେବେ ସେହି ଖାତା ବନ୍ଦ ହୋଇଗଲା । ନୂଆ ଇଚ୍ଛା ନାହିଁ, ଏଣୁ ଖାତା ବନ୍ଦ ହୋଇଗଲା । ଖାତା ବନ୍ଦ କରିବା ଉଚିତ ।

## ... ସେଠି ପ୍ରକୃତିର ଶୂନ୍ୟତା

**ପ୍ରଶ୍ନକର୍ତ୍ତା :** ଶୁଦ୍ଧାତ୍ମାର ଜ୍ଞାନ ତ ଦେଲେ । ଏବେ ଏହି ପ୍ରକୃତି ଶୂନ୍ୟତା ପ୍ରାପ୍ତ କରୁ, ସେଥିପାଇଁ ଯଦି ନଅ କଲମ ପଢ଼ିବୁ, କ'ଣ ତାହା ହେଲ୍ପ କରେ ?

**ଦାଦାଶ୍ରୀ :** ତାହାଦ୍ୱାରା ହେଲ୍ପ ତ ହେବ ନିଶ୍ଚିତ । ଯେତିକିରେ ଗୁଣା କରିଛ ସେତିକିରେ ଭାଗ କରିବ । ମୋତେ ଡକ୍ଟର କହନ୍ତି ଯେ, 'ଏହା ଖାଇବ' । ମୁଁ କହିଲି,

ଡକ୍ଟର, ଏ କଥା ଅନ୍ୟ ରୋଗୀଙ୍କୁ କୁହ । ମୋର ଗୁଣାକାର ଅଲଗା ପ୍ରକାରର ଅଟେ । ସେ ମୋତେ ଭାଗାକାର କରିବା ପାଇଁ କହେ ତେବେ ତାହାର ମେଳ କିପରି ହେବ ?

**ପ୍ରଶ୍ନକର୍ତ୍ତା :** ଆପଣ ତ ଉପରୁ ଅଧିକ ମାତ୍ରାରେ ଲଙ୍କା ଖାଇ ଭାଗାକାର କରନ୍ତି ।

**ଦାଦାଶ୍ରୀ :** ଲଙ୍କା ଖାଇବା ସମୟରେ ସମସ୍ତଙ୍କୁ କହେ ଯେ ଏହା କାଶର ଔଷଧ ଖାଉଛି ଏବଂ ଯେତେବେଳେ କାଶ ଆସେ ସେତେବେଳେ ଦେଖାଏ ଯେ ଦେଖ, ହେଲା ନା କାଶ ?

**ପ୍ରଶ୍ନକର୍ତ୍ତା :** ସେଥିରେ ଭାଗାକାର କେଉଁଠି ହେଲା ?

**ଦାଦାଶ୍ରୀ :** ତାହା ହିଁ ଭାଗାକାର । ଯଦି ଲଙ୍କା ନ ଖାଇଥାନ୍ତି ତେବେ ଭାଗାକାର ପୂରା ହୋଇନଥାନ୍ତା ।

**ପ୍ରଶ୍ନକର୍ତ୍ତା :** ଅର୍ଥାତ ପୂର୍ବରୁ ପ୍ରକୃତିରେ ଯାହା ଭରା ହୋଇଛି, ତାହାକୁ ଏବେ ପୂରା କରିବାର ଅଛି ?

**ଦାଦାଶ୍ରୀ :** ହଁ, ପୂରା କରିନେବାର ଅଛି ।

ଏ ନୀରୂବେନକୁ ମୁଁ କହେ, 'ତୁମେ ଯଦି କହିବ ତେବେ ସୁପାରୀ ଖାଇବି ?' କିନ୍ତୁ ସୁପାରୀ ଖାଇବା ସମୟରେ କହେ ଯେ ଏହା କାଶ ହେବାର ଔଷଧ ଅଟେ । ସେତେବେଳେ ସେ ଅନେକ ସମୟରେ 'ମନା' କରେ, ତେବେ ଖାଏ ନାହିଁ, ଏବଂ ପୁଣି କହେ ଯେ 'ନିଅନ୍ତୁ', ସେତେବେଳେ ଖାଇଦିଏ । ସେଥିପାଇଁ କାଶ ହୁଏ ଏବଂ (ସାଧାରଣତଃ) ମୁଁ ସୁପାରୀ ଖାଏ ନାହିଁ । ମୋତେ କୌଣସି ଜିନିଷର ଅଭ୍ୟାସ ନାହିଁ । କିନ୍ତୁ ଭିତରେ ଯଦି ମାଲ ଭରା ହୋଇଥିବ ତେବେ ଖିଆଯାଏ ନା ?

ଆମର ଏହା 'ଅକ୍ରମ ବିଜ୍ଞାନ' ଅଟେ ! ସେ ପୂର୍ବର ଅଭ୍ୟାସ ପଡ଼ି ରହିଛି, ସେଥିପାଇଁ ଏପରି ହୁଏ । ଏଣୁ ଏହି ଶକ୍ତି ମାଗ । ପରେ ଯଦି ଲୁବ୍ଧ ଆହାର ଖାଇନେଲ, ସେଥିରେ ଅସୁବିଧା ନାହିଁ, କିନ୍ତୁ ଏହି କଲମ ଅନୁସାରେ ବୋଲିବା ଦ୍ୱାରା ତୁମେ ସେହି ବନ୍ଧନରୁ ମୁକ୍ତ ହୋଇଯାଅ ।

**ପ୍ରଶ୍ନକର୍ତ୍ତା :** ଆମର ଯେଉଁ ପ୍ରକୃତି ଅଛି, ଯଦି ଗୁଣାକାର କରିବ ତେବେ ତାହା ବଢ଼ିଯିବ । ତାହାର ଭାଗ କରିବା ଉଚିତ । ପ୍ରକୃତିକୁ ପ୍ରକୃତିରେ ଭାଗ କରିବା ଉଚିତ, ଏହା ଟିକିଏ ବୁଝାନ୍ତୁ ।

**ଦାଦାଶ୍ରୀ :** ସେଥିପାଇଁ ଏହି କଲମ ବାରମ୍ବାର ବୋଲିବା ଦ୍ୱାରା ତାହାର

ଭାଗାକାର ହୁଏ ଏବଂ କମ ହୋଇଯାଏ । ଏହି କଲମ ଯଦି ନ ବୋଲିବ ତେବେ (ପ୍ରକୃତି ରୂପୀ) ଚାରା ଆପେ ଆପେ ବଢ଼ିଚାଲିବ । ଅର୍ଥାତ ଏହା ବାରମ୍ବାର ବୋଲିବା ଦ୍ୱାରା କମ ହୋଇଯାଏ । ଏହାକୁ ବୋଲିଚାଲିବା ଦ୍ୱାରା ପ୍ରକୃତିର ଯେଉଁ ଗୁଣାକାର ହୋଇଛି ତାହାର ଭାଗାକାର ହେବ ଏବଂ ଆତ୍ମାର ଗୁଣାକାର ହେବ । ଅର୍ଥାତ ଆତ୍ମାର ପୁଷ୍ଟି ମିଳିବ । ସମୟ (ଫୁରସତ) ମିଳିବା ମାତ୍ରେ ଏହି ନଅ କଲମ ଦିନ-ରାତି ବୋଲିବ ! ଫୁରସତ ମିଳିବା ମାତ୍ରେ ବୋଲିବ । ମୁଁ ତ ସବୁ ଔଷଧ ଦେଇ ଦେଉଛି, ସବୁକିଛି ବୁଝାଇ ଦେଉଛି, ପରେ ତୁମକୁ ଯାହା କରିବାର ଥିବ ତାହା କରିବ...

## ପ୍ରତ୍ୟକ୍ଷ-ପରୋକ୍ଷ, ଜୀବନ୍ତ ଅଥବା ମୃତ...

**ପ୍ରଶ୍ନକର୍ତ୍ତା :** ୮. 'ହେ ଦାଦା ଭଗବାନ ! ମୋତେ, କୌଣସି ବି ଦେହଧାରୀ ଜୀବାତ୍ମାର ପ୍ରତ୍ୟକ୍ଷ ଅଥବା ପରୋକ୍ଷ, ଜୀବନ୍ତ ଅଥବା ମୃତ, କାହାର କିଞ୍ଚିତମାତ୍ର ବି ଅବର୍ଣ୍ଣବାଦ, ଅପରାଧ, ଅବିନୟ ନ କରେ, ନ କରାଏ ଅଥବା କର୍ତ୍ତା ପ୍ରତି ଅନୁମୋଦନ ନ କରେ, ଏପରି ପରମ ଶକ୍ତି ଦିଅନ୍ତୁ ।'

**ଦାଦାଶ୍ରୀ :** ଅବର୍ଣ୍ଣବାଦ ଅର୍ଥାତ କୌଣସି ବ୍ୟକ୍ତିର ବାହାରେ ଇଜ୍ଜତ ଭଲ ଥିବ, ସୁନାମ ଥିବ, କୀର୍ତ୍ତି ଥିବ, ତା' ବିଷୟରେ ଓଲଟା କହି ତା'ର ଇଜ୍ଜତ ନିଲାମ କରିବା, ତାହାକୁ ଅବର୍ଣ୍ଣବାଦ କହନ୍ତି । ତା'ର ଓଲଟା କହିବା ।

**ପ୍ରଶ୍ନକର୍ତ୍ତା :** ଏଥିରେ ମୃତବ୍ୟକ୍ତିଙ୍କୁ ମଧ୍ୟ ଆମେ ଯେଉଁ କ୍ଷମା ପ୍ରାର୍ଥନା କରୁଛେ, ଆମେ ଯେଉଁ ସମ୍ବୋଧନ କରୁଛେ ତାହା କ'ଣ ସେମାନଙ୍କୁ ପହଞ୍ଚେ ?

**ଦାଦାଶ୍ରୀ :** ତାଙ୍କୁ ପହଞ୍ଚାଇବାର ନାହିଁ । ଯେଉଁ ବ୍ୟକ୍ତି ମରି ଯାଇଛି ଆଉ ଆଜି ତା'ର ନାମ ନେଇ ଯଦି ତୁମେ ଗାଳି ଦିଅ ତେବେ ତୁମେ ଭୟଙ୍କର ଦୋଷର ଭାଗୀ ହେଉଛ, ମୁଁ ଏହା କହିବାକୁ ଚାହୁଁଛି । ସେଥିପାଇଁ ମୁଁ ମନା କରେ ଯେ ମରି ଯାଇଥିବା ବ୍ୟକ୍ତିର ମଧ୍ୟ ନାମ ଦେବ ନାହିଁ (କିଛି ଓଲଟା କହିବ ନାହିଁ) । ବାକି, ପହଞ୍ଚାଇବା-ନ ପହଞ୍ଚାଇବାର ପ୍ରଶ୍ନ ହିଁ ନାହିଁ । କେହି ଖରାପ ବ୍ୟକ୍ତି ଥିବ ଏବଂ ସେ ସବୁକିଛି ଓଲଟା କରି ମରିଯାଇଥିବ, ତଥାପି ପରେ ତା'ର କିଛି ଖରାପ କହିବ ନାହିଁ ।

ରାବଣଙ୍କ ବିଷୟରେ ମଧ୍ୟ ଓଲଟା କହିବା ଉଚିତ ନୁହେଁ କାରଣ ସେ ଏବେ ଦେହଧାରୀ ଅଟନ୍ତି (ଅନ୍ୟଏକ ଜନ୍ମରେ) । ଅତଃ ତାଙ୍କୁ 'ଫୋନ' ପହଞ୍ଚିଯାଏ । 'ରାବଣ ଏମିତି ଥିଲା ଆଉ ସେମିତି ଥିଲା' ଯଦି କହିବା, ତେବେ ତାହା ତାଙ୍କୁ ପହଞ୍ଚିଯାଏ ।

ତୁମର କେଉଁ ବନ୍ଧୁ-ବାନ୍ଧବ ଯାହାଙ୍କର ମୃତ୍ୟୁ ହୋଇଯାଇଥିବ ଏବଂ ଲୋକେ ଯଦି ତାଙ୍କର ନିନ୍ଦା କରୁଥିବେ ତେବେ ତୁମକୁ ସେଥିରେ ହଁ ରେ ହଁ ମିଳାଇବା ଉଚିତ ନୁହେଁ । ଏପରି ଯଦି ହୋଇଥିବ ତେବେ ତୁମକୁ ତାହାର ପଶ୍ଚାତାପ କରିବା ଉଚିତ ଯେ ଏପରି ନହେବା ଉଚିତ । କେଉଁ ମୃତବ୍ୟକ୍ତି ବିଷୟରେ ଏପରି କହିବା ଭୟଙ୍କର ଅପରାଧ ଅଟେ । ଯିଏ ଏବେ ନାହିଁ ତା'କୁ ବି ଆମ ଲୋକେ ଛାଡ଼ନ୍ତି ନାହିଁ । ଏପରି କରନ୍ତି ନା ନାହିଁ ଲୋକେ ? ଏପରି କରିବା ଉଚିତ ନୁହେଁ, ମୁଁ ଏହା କହିବାକୁ ଚାହୁଁଛି । ସେଥିରେ ବହୁତ ବିପଦ ଅଛି ।

ସେହି ସମୟରେ ପୂର୍ବରୁ ବନ୍ଧା ହୋଇଥିବା ଅଭିପ୍ରାୟ ଅନୁସାରେ ଏହା କହି ଦିଅନ୍ତି । ସେଥିପାଇଁ ଏହି କଲମ ଯଦି ବୋଲୁଥିବ ଏବଂ ପରେ ସେପରି କହି ଦିଆଯାଏ, ତେବେ ଦୋଷ ଲାଗେ ନାହିଁ । ହୁକ୍କା ପିଇଚାଲିବା ଏବଂ କହିଚାଲିବା ଯେ 'ଏହା ନ ପିଏ, ନ ପିଆଏ ଅଥବା ପିଇବା ପାଇଁ ଅନୁମୋଦନ ନ କରେ, ଏପରି ଶକ୍ତି ଦିଅନ୍ତୁ ।' ତେବେ ଏହାଦ୍ୱାରା ସମସ୍ତ ବନ୍ଧନ ଛୁଟିଯାଏ, ନହେଲେ *ପୁଦ୍‌ଗଳ* ର ସ୍ୱଭାବ ଏପରି ଅଟେ ଯେ ତୁରନ୍ତ ପଲ୍‌ଟି ମାରିଦେବ । ସେଥିପାଇଁ ଏପରି ଭାବନା କରିବା ଉଚିତ ।

## ଜଗତ କଲ୍ୟାଣ କରିବାପାଇଁ ଶକ୍ତି ଦିଅନ୍ତୁ

**ପ୍ରଶ୍ନକର୍ତ୍ତା :** ୯. 'ହେ ଦାଦା ଭଗବାନ ! ମୋତେ ଜଗତ କଲ୍ୟାଣ କରିବାରେ ନିମିତ୍ତ ହେବା ପାଇଁ ପରମ ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ ।' ଆମେ ଏହି କଲ୍ୟାଣର ଭାବନା ଯଦି କରିବୁ, ତେବେ ତାହା କିପରି କାମ କରିବ ?

**ଦାଦାଶ୍ରୀ :** ତୁମର ଶବ୍ଦ ଯଦି ଏପରି ବାହାରେ ତେବେ ସାମ୍ନାବାଲାର କାମ ହୋଇଯିବ ।

**ପ୍ରଶ୍ନକର୍ତ୍ତା :** ଆପଣ *ପୌଦ୍‌ଗଳିକ* ନା 'ରିୟଲ୍'(ଆତ୍ମ)ର କଲ୍ୟାଣ କଥା କହୁଛନ୍ତି ?

**ଦାଦାଶ୍ରୀ :** *ପୁଦ୍‌ଗଳ* ର ନୁହେଁ, ଆମକୁ ତ ଯାହା 'ରିୟଲ୍' ଆଡ଼କୁ ନେଇଯାଏ ତାହାର ଆବଶ୍ୟକତା ଅଛି । ପୁଣି 'ରିୟଲ୍' ସାହାରାରେ ଆଗର (ମୋକ୍ଷ ପର୍ଯ୍ୟନ୍ତ) କାମ ହୋଇଯିବ । ଏହି 'ରିୟଲ୍' ଯଦି ପ୍ରାପ୍ତ ହେବ ତେବେ 'ରିଲେଟିଭ୍' ପ୍ରାପ୍ତ ହେବ ନିଶ୍ଚିତ ! ସାରା ଜଗତର କଲ୍ୟାଣ କର, ଏପରି ଭାବନା କରିବାର ଅଛି । କେବଳ ଗାଇବା ପାଇଁ କହିବାର ନାହିଁ, ଏପରି ଭାବନା ବ୍ୟକ୍ତ କରିବାର ଅଛି । ଏ ତ ଲୋକେ ଏହାକୁ କେବଳ ଗାଇବା ପାଇଁ ଗାଆନ୍ତି, ଯେମିତି ଶ୍ଲୋକ ଗାଆନ୍ତି, ସେମିତି ।

**ପ୍ରଶ୍ନକର୍ତ୍ତା :** ଏମିତି ଖାଲି ବସି ରହିବା ଅପେକ୍ଷା ଏପରି ଭାବନା କଲେ ତାହା ଉତ୍ତମ କୁହାଯିବ ନା ?

**ଦାଦାଶ୍ରୀ :** ଅତି ଉତ୍ତମ । ଖରାପ ଭାବ ତ ବାହାରି ଗଲା ! ସେଥିରେ ଯେତିକି ହେଲା ସେତିକ ଠିକ, ସେତିକି ତ କମେଇ(ଉପାର୍ଜନ) ହେଲା !

**ପ୍ରଶ୍ନକର୍ତ୍ତା :** ସେହି ଭାବନାକୁ ମେକାନିକାଲ୍ ଭାବନା କହିପାରିବା ?

**ଦାଦାଶ୍ରୀ :** ନା । ମେକାନିକାଲ୍ କିପରି କହିପାରିବା ? ମେକାନିକାଲ୍ ତ ଯାହା ଆବଶ୍ୟକତା ଠାରୁ ଅଧିକ, ଏମିତିରେ ନିଜକୁ ଖିଆଲ ରହେ ନାହିଁ ଏବଂ ଖାଲି ସେମିତି କହିଚାଲିଥାଏ, ତାହେଲେ ମେକାନିକାଲୀ !

## ଏଥିରେ କରିବାର କିଛି ନାହିଁ

**ପ୍ରଶ୍ନକର୍ତ୍ତା :** ଏଥିରେ ଲେଖା ଅଛି ଯେ 'ମୋତେ ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ' ତେବେ ଏପରି ପଢ଼ିବା ଦ୍ୱାରା ଆମକୁ ଶକ୍ତି ମିଳିଯିବ ?

**ଦାଦାଶ୍ରୀ :** ଅବଶ୍ୟ ! ଏହା 'ଜ୍ଞାନୀପୁରୁଷ'ଙ୍କ ଶବ୍ଦ ଅଟେ !! ପ୍ରଧାନମନ୍ତ୍ରୀଙ୍କ ଚିଠି ହୋଇଥିବ ଏବଂ ଏଠାକାର ଏକ ବେପାରୀର ଚିଠି ହୋଇଥିବ ତେବେ ସେଥିରେ କ'ଣ କିଛି ଫରକ ନାହିଁ ?! କ'ଣ କିଛି କହିଲ ନାହିଁ ? ହଁ, ଅର୍ଥାତ ଏହା 'ଜ୍ଞାନୀପୁରୁଷ'ଙ୍କ ଶବ୍ଦ ଅଟେ । ଏଥିରେ ଯଦି ବୁଦ୍ଧି ଚଲାଇବ ତେବେ ମଣିଷ ପାଗଳ ହୋଇଯିବ । ଏହା ତ ବୁଦ୍ଧି ଉପରର କଥା ଅଟେ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ଅମଳରେ ଆଣିବା ପାଇଁ ସେଥିରେ ଯେପରି ଲେଖା ଅଛି ସେହି ଅନୁସାରେ କରିବାକୁ ହେବ ନା ?

**ଦାଦାଶ୍ରୀ :** ନା, ଏହା କେବଳ ପଢ଼ିବାର ଅଛି । ଅମଳରେ ଆପେ ଆପେ ଆସିଯିବ । ଏଣୁ ଏହି (ନଅ କଲମର) ପୁସ୍ତକ ତୁମେ ନିଜ ସାଥିରେ ହିଁ ରଖିବ ଏବଂ ପ୍ରତିଦିନ ପଢ଼ିବ । ତୁମକୁ ଏହା ଭିତରର ସମସ୍ତ ଜ୍ଞାନ ଅବଗତ ହୋଇଯିବ । ପ୍ରତିଦିନ ବାରମ୍ୱାର ପଢ଼ିବା ଦ୍ୱାରା ତୁମକୁ ଏହାର ପ୍ରାକ୍ଟିସ୍ ହୋଇଯିବ । ତୁମେ ସେହି ରୂପ ହୋଇଯିବ । ଆଜି ତୁମକୁ ମାଲୁମ ହେବନାହିଁ ଯେ ଏଥିରେ ମୋତେ କ'ଣ ଫାଇଦା ହେଲା ! କିନ୍ତୁ ଧୀରେ-ଧୀରେ ତୁମକୁ 'ଯଥାର୍ଥ' ବୁଝା ପଡ଼ିଯିବ ।

ଏହି ଶକ୍ତି ମାଗିବାଦ୍ୱାରା ପରେ ତାହାର ଫଳ ଆଚରଣରେ ପ୍ରତିଫଳିତ ହେବ । ସେଥିପାଇଁ ତୁମକୁ 'ଦାଦା ଭଗବାନ'ଙ୍କ ପାଖରୁ ଶକ୍ତି ମାଗିବାର ଅଛି । ଏବଂ 'ଦାଦା

ଭଗବାନ'ଙ୍କ ପାଖରେ ଅପାର, ଅନନ୍ତ ଶକ୍ତି ଅଛି, ଯାହା ମାଗିବ ତାହା ମିଳିବ ଏପରି ! ଅର୍ଥାତ ଏହା ମାଗିଲେ କ'ଣ ହେବ ?

**ପ୍ରଶ୍ନକର୍ତ୍ତା :** ଶକ୍ତି ପ୍ରାପ୍ତ ହେବ ।

**ଦାଦାଶ୍ରୀ :** ହଁ, ଏହାକୁ ପାଳନ କରିବାର ଶକ୍ତି ଆସିବ, ତାହାପରେ ପାଳନ ହେବ । ତାହା ଖାଲି ଏମିତି ପାଳି ହେବନାହିଁ । ସେଥିପାଇଁ ତୁମେ ବାରମ୍ବାର ଏହି ଶକ୍ତି ମାଗିଚାଲ । ଆଉ କିଛି କରିବାର ନାହିଁ, ଏ ଯେଉଁ ଲେଖାଯାଇଛି ତୁରନ୍ତ ସେହିପରି ହୁଏ ନାହିଁ, ଏବଂ ତାହା ହେବ ମଧ୍ୟ ନାହିଁ । ତୁମଦ୍ୱାରା ଯେତିକି ହୋଇପାରୁଛି ତାହାକୁ ଜାଣ ଯେ ଏତିକି ହୋଇପାରୁଛି ଆଉ ଏତିକି ହୋଇପାରୁନାହିଁ, ତାହାର କ୍ଷମା ମାଗିବ ଏବଂ ସାଥେ ସାଥେ ଏହି ଶକ୍ତି ମାଗିବ, ଏହାଦ୍ୱାରା ଶକ୍ତି ପ୍ରାପ୍ତ ହେବ ।

## ଶକ୍ତି ମାଗି, ସିଦ୍ଧ କର କାମ

ଜଣେ ଭାଇକୁ ମୁଁ କହିଲି, 'ଏହି ନଅ କଲମରେ ସବୁ ଆସିଯାଇଛି । ଏଥିରେ କିଛି ବାକି ରଖିନାହିଁ । ତୁମେ ଏହି ନଅ କଲମ ସବୁଦିନ ପଢ଼ିବ ।' ସେ କହିଲା, 'କିନ୍ତୁ ଏହା ହୋଇପାରିବ ନାହିଁ ।' ମୁଁ କହିଲି, 'ଆରେ, ମୁଁ କରିବା ପାଇଁ କହୁନାହିଁ ।' 'ହୋଇପାରିବ ନାହିଁ' ଏପରି କାହିଁକି କହୁଛ ? ତୁମକୁ ତ ଏତିକି କହିବାର ଅଛି ଯେ, 'ହେ ଦାଦା ଭଗବାନ, ମୋତେ ଶକ୍ତି ଦିଅ ।' ଶକ୍ତି ମାଗିବା ପାଇଁ କହୁଛି । ତେବେ କହେ, 'ଏହା ତ ମଜା ଆସିବ !' (ସଂସାରରେ) ଲୋକମାନେ ତ କେବଳ କରିବା ହିଁ ଶିଖାଇଛନ୍ତି ।

ପରେ ମୋତେ ପଚାରେ, 'ଏ ଶକ୍ତିସବୁ କିଏ ଦେବ ?' ମୁଁ କହିଲି, 'ମୁଁ ଦେବି ଶକ୍ତି' । ତୁମେ ଯାହା ମାଗିବ ସେ ଶକ୍ତି ଦେବା ପାଇଁ ପ୍ରସ୍ତୁତ ଅଛି । ତୁମକୁ ନିଜକୁ ମାଗିବା ହିଁ ଆସୁନାହିଁ, ସେଥିପାଇଁ ମୋତେ ଏପରି ଶିଖାଇବାକୁ ପଡୁଛି ଯେ ଏହିପରି ଶକ୍ତି ମାଗିବ । ଶିଖାଇବାକୁ ପଡୁନାହିଁ ଏପରି ? ଦେଖ, ଏହା ଶିଖାଇଛି ନା ସବୁ ? ସେ ବୁଝିଗଲା, ପରେ କୁହେ, ଏତିକି ତ ହେବ, ଏତିକିରେ ସବୁ ଆସିଗଲା ।

**ପ୍ରଶ୍ନକର୍ତ୍ତା :** ପ୍ରଥମେ ତ ଏହା ହିଁ ଶଙ୍କା ହୁଏ ଯେ ଶକ୍ତି ମାଗିଲେ ମିଳିବ କି ନାହିଁ ?

**ଦାଦାଶ୍ରୀ :** ଏହି ଶଙ୍କା ଭୁଲ ସାବ୍ୟସ୍ତ ହୋଇଚାଲେ । ଏବେ ଏହି ଶକ୍ତି ମାଗିଚାଲୁଛ ନା ! ଏଣୁ ତୁମଠାରେ ଏହି ଶକ୍ତି ଉତ୍ପନ୍ନ ହେବା ପରେ, ସେ ଶକ୍ତି ହିଁ କାର୍ଯ୍ୟ କରାଇବ । ତୁମକୁ କିଛି କରିବାର ନାହିଁ । ତୁମେ ଯଦି କରିବାକୁ ଯିବ ତେବେ

ଅହଂକାର ବଢ଼ିଯିବ । 'ମୁଁ କରିବାକୁ ଯାଉଛି କିନ୍ତୁ ହେଉନାହିଁ' ଏମିତି ହେବ ପୁଣି । ସେଥିପାଇଁ ସେ ଶକ୍ତି ମାଗ ।

**ପ୍ରଶ୍ନକର୍ତ୍ତା :** ଏହି ନଅ କଲମରେ ଆମେ ଶକ୍ତି ମାଗୁଛେ ଯେ ଏପରି ନ କରେ, ନ କରାଏ ଏବଂ ଅନୁମୋଦନ ନ କରେ, ଅର୍ଥାତ ତାହାର ଅର୍ଥ ଏହା ଯେ ଭବିଷ୍ୟତରେ ଏପରି ନ ହେଉ, ସେଥିପାଇଁ ଆମେ ଶକ୍ତି ମାଗୁଛେ ନା ପୁଣି ଏ ଆମର ପଛର କରାଯାଇଥିବା ଧୋଇଯାଉ, ସେଥିପାଇଁ?

**ଦାଦାଶ୍ରୀ :** ପଛର ଧୋଇଯାଉ ଏବଂ ଶକ୍ତି ଉତ୍ପନ୍ନ ହେଉ । ଶକ୍ତି ତ ଅଛି । କିନ୍ତୁ ସେ ଶକ୍ତି (ପଛ ଦୋଷ) ଧୋଇ ହେବାପରେ ବ୍ୟକ୍ତ ହୁଏ । ଶକ୍ତି ତ ଅଛି କିନ୍ତୁ ବ୍ୟକ୍ତ ହେବା ଦରକାର । ସେଥିପାଇଁ ଦାଦା ଭଗବାନଙ୍କ କୃପା ମାଗୁଛେ, ଏହା ଆମର ଯଦି ଧୋଇଯିବ ତେବେ ଶକ୍ତି ବ୍ୟକ୍ତ ହୋଇଯିବ ।

**ପ୍ରଶ୍ନକର୍ତ୍ତା :** ଏ ସବୁ ପଢ଼ିବା ପରେ ଜଣା ପଡ଼ିଲା, ଏହା ତ ବହୁତ ମୂଲ୍ୟବାନ କଥା ଅଟେ । ସାମାନ୍ୟ ମନୁଷ୍ୟ ବି ଯଦି ବୁଝିଯିବ ତେବେ ତା'ର ସାରା ଜୀବନ ସୁଖମୟ ଯିବ ।

**ଦାଦାଶ୍ରୀ :** ହଁ, ମାତ୍ର ବୁଝିବା ଭଳି କଥା ହିଁ ଆଜି ପର୍ଯ୍ୟନ୍ତ ତା'କୁ ମିଳିଲା ନାହିଁ । ଏହା ପ୍ରଥମ ଥର ସ୍ପଷ୍ଟ ବୁଝିବା ଭଳି କଥା ମିଳୁଅଛି । ଏବେ ଏହା ଯଦି ପ୍ରାପ୍ତ ହୋଇଯିବ, ତେବେ ନିବେଡ଼ା ଆସିଯିବ ।

ଏହି ନଅ କଲମରୁ ଆପେ ଆପେ ଆମଦ୍ୱାରା ଯେତିକି କଲମର ପାଳନ ହେଉଥିବ, ସେଥିରେ ଅସୁବିଧା ନାହିଁ । କିନ୍ତୁ ଯେତିକି ପାଳନ ନ ହୋଇପାରେ, ତାହାର ମନରେ ଦୁଃଖ ରଖିବ ନାହିଁ । ତୁମକୁ ତ କେବଳ ଏତିକି କହିବାର ଅଛି ଯେ ମୋତେ ଶକ୍ତି ଦିଅନ୍ତୁ । ଏହାଦ୍ୱାରା ଶକ୍ତି ମିଳିଚାଲିବ । ଭିତରେ ଶକ୍ତି ଜମା ହୋଇଚାଲିବ । ପରେ ଆପେ ଆପେ କାମ ହେବ । ଯଦି ଶକ୍ତି ମାଗିବ ତେବେ ସମସ୍ତ ନଅ କଲମ ସେଟ୍ ହୋଇଯିବ । ଅର୍ଥାତ ତୁମେ ଯଦି କେବଳ କହିବ ତେବେ ମଧ୍ୟ ବହୁତ ହୋଇଗଲା । କହିଲ ଅର୍ଥାତ ଶକ୍ତି ମାଗିଲ, ତାହାଦ୍ୱାରା ଶକ୍ତି ପ୍ରାପ୍ତ ହେଲା ।

## 'ଭାବନା'ରୁ ଭାବଶୁଦ୍ଧି

**ପ୍ରଶ୍ନକର୍ତ୍ତା :** ଆପଣ କହିଲେ ନା ଯେ, ହୁକ୍କା ପିଇଚାଲେ କିନ୍ତୁ ଭିତରେ ଚାଲିଥାଏ ଯେ ନ ପିଏ, ନ ପିଆଏ ଏବଂ ପିଇବା ପାଇଁ ଅନୁମୋଦନ ନ କରେ...

**ଦାଦାଶ୍ରୀ :** ହଁ, ଅର୍ଥାତ ଏହାର ଅର୍ଥ କେବଳ ଏତିକି ଯେ, 'ତୁମେ ଏଥିରେ

ସହମତ ନୁହଁ', ଏପରି କହିବାକୁ ଚାହୁଁଛି । ଅର୍ଥାତ ତାହାଠାରୁ ଆମେ ଅଲଗା । ଏବଂ ହୁକ୍କା ପିଇବା ଯେବେ ଆପେ ଆପେ ବନ୍ଦ ହୋଇଯିବ, ତେବେ ଠିକ । କିନ୍ତୁ ଏବେ ତୁମେ ତା' ସାଙ୍ଗରେ ଲାଖିନାହଁ, ସେ ତୁମ ସହ ଲାଖିଛି । ତା'ର ଅବଧି ପୂରା ହୋଇଯିବା ପରେ ଚାଲିଯିବ, ଏପରି କହିବାକୁ ଚାହୁଁଛି । ଗୋଟିଏ ପଟେ ହୁକ୍କା ପିଉଥିବ ଏବଂ ଗୋଟିଏ ପଟେ ଏହି ଭାବନା ଯଦି କରିବ ତେବେ (ଧୀରେ-ଧୀରେ) ପିଇବା ଉଡ଼ିଯିବ ଏବଂ ଏହି ଭାବର ଆରମ୍ଭ ହୋଇଗଲା ।

ଲୋକେ କହନ୍ତି 'ଆସନ୍ତୁ ସାହେବ, ଆସନ୍ତୁ ସାହେବ' । କିନ୍ତୁ ସେଠି ମନରେ କ'ଣ ଥାଏ ଯେ 'ଏହି ଅବେଳରେ କେଉଁଠୁ ଆସିଗଲେ ?' ଯେବେକି ଏମାନେ କ'ଣ କହନ୍ତି ? ହୁକ୍କା ପିଅନ୍ତି, କିନ୍ତୁ ଭିତରେ 'ଏହା ନ ହେବା ଉଚିତ' ଏପରି ଥାଏ । ଯେବେକି ସେମାନେ ଓଲଟା କହନ୍ତି । ବାହାରେ 'ଆସନ୍ତୁ, ବସନ୍ତୁ କହନ୍ତି ଏବଂ ପରେ ଭିତରେ (ମନରେ) କହନ୍ତି ଯେ, 'ଏ କେଉଁଠୁ ଆସିଗଲେ ?' ତେବେ ସେମାନେ ସୁଧୁରିଥିବାକୁ ବିଗାଡ଼ନ୍ତି, ଯେବେକି ଆମେ ବିଗିଡ଼ିଥିବାକୁ ସୁଧାରୁଛେ ।

**ପ୍ରଶ୍ନକର୍ତ୍ତା :** ପୁରା 'ଅକ୍ରମ ବିଜ୍ଞାନ'ର ଅଜୁବା (ଆଶ୍ଚର୍ଯ୍ୟ) ଅଟେ ଏହା ଯେ ବାହାରେ ବିଗିଡ଼ିହୋଇ ଅଛି କିନ୍ତୁ ଭିତରେ ସୁଧାରୁଛନ୍ତି ।

**ଦାଦାଶ୍ରୀ :** ହଁ, ସେଥିପାଇଁ ଆମକୁ ସନ୍ତୋଷ ରହୁଛି ନା ! ଯେ ପଛେ ଏହି ଭାଜି (ଛଣାଭାଜି) ବିଗିଡ଼ିଗଲା ତ ବିଗିଡ଼ିଗଲା କିନ୍ତୁ ଏହି ନୂଆ ଭାଜି ତ ଅବଶ୍ୟ ଭଲ ହେବ । ଥରେ ଭାଜି ବିଗିଡ଼ିଗଲା ତେବେ ଗଲା କିନ୍ତୁ ନୂଆ ତ ଭଲ ହେବ ନା ? ସେତେବେଳେ ସେମାନେ କ'ଣ କହନ୍ତି ଯେ 'ଏହି ଯେଉଁ ଭାଜି ଅଛି ତାହାକୁ ହିଁ ସୁଧାରିବାର ଅଛି ।' ଆରେ ଏବେ ଛାଡ଼ି ଦେ, ଯିବାକୁ ଦେ ଏହାକୁ, ନୂଆ ବି ବିଗିଡ଼ିଯିବ । ଏହା ତ ଭାଜି ମଧ୍ୟ ଗଲା ଏବଂ ତେଲ ମଧ୍ୟ ଗଲା ।

**ପ୍ରଶ୍ନକର୍ତ୍ତା :** ଆଜି ଯାହା ବିଗିଡ଼ିଛି, ତାହାର ଦାୟୀ ଆଜି ଆମେ ନୁହେଁ । ତାହା ତ ପୂର୍ବଜନ୍ମର ପରିଣାମ ଅଟେ ।

**ଦାଦାଶ୍ରୀ :** ହଁ, ଆଜି ଆମେ ଦାୟୀ ନୁହେଁ । ଆଜି ସେ ସତ୍ତା ଅନ୍ୟ ହାତରେ ଅଛି । ଦାୟିତ୍ୱଭାର ଆମ ହାତରେ ନାହିଁ ନା ! ଏଥିରେ ପରିବର୍ତ୍ତନ ହେବାର ନାହିଁ ଆଉ ବିନା କାରଣରେ ହାୟ-ହାୟ କାହିଁକି କରୁଛୁ ? ! କିନ୍ତୁ ସେଠି ତ ପୁଣି ଗୁରୁ ମହାରାଜ ବି କହନ୍ତି ଯେ, 'ଯଦି ଏପରି ନହୁଏ ତେବେ ତୁମକୁ ଏଠାକୁ ଆସିବାକୁ ବି ଦେବି ନାହିଁ ।' ସେତେବେଳେ ସେ କ'ଣ କହେ ଯେ, 'ସାହେବ, ମୋତେ କରିବାର ତ

ବହୁତ କିଛି ଅଛି କିନ୍ତୁ ହେଉ ନାହିଁ, ତାହାର କ'ଣ କରିବି ?' ଅର୍ଥାତ ନବୁଝିବା କାରଣରୁ ଘୋଟାଲା ଚାଲୁରହିଛି ।

**ପ୍ରଶ୍ନକର୍ତ୍ତା :** ଯେତେବେଳେ ପ୍ରକୃତି ହଠାତ୍ କିଛି ଓଲଟା-ସିଧା କରି ପକାଏ, ସେତେବେଳେ ଭିତରେ ବହୁତ ସଫୋକେଶନ୍ ହୁଏ ।

**ଦାଦାଶ୍ରୀ :** ଆରେ, ଏ ପର୍ଯ୍ୟନ୍ତ ହୁଏ ଯେ ପାଞ୍ଚ-ପାଞ୍ଚ ଦିନ ଯାଏଁ ଖାଆନ୍ତି ନାହିଁ । ଆରେ ଦୋଷ କାହାର ଏବଂ କାହାକୁ ମାରିଚାଲିଛୁ ! ପେଟକୁ କାହିଁକି ମାରୁଛୁ ! ଦୋଷ ମନର ଏବଂ ମାରେ ପେଟକୁ, କହେ ଯେ, 'ଖାଇବାର ନାହିଁ ତୋତେ', ତେବେ ଏଥିରେ ଦେହ ବିଚରା କ'ଣ କରିବ ? ପୁଣି ଶକ୍ତି ଚାଲିଯିବ ନା, ବିଚରାର ! ଯଦି ସେ ଖାଇଥିବ, ତେବେ ଅନ୍ୟ କିଛି କାମ କରିପାରିବ । ସେଥିପାଇଁ ଆମ ଲୋକେ କହନ୍ତି ଯେ 'ମଇଁଷିର ଦୋଷର ଦଣ୍ଡ ମଇଁଷିଚରାଳୀକୁ କାହିଁକି ଦେଉଛ ?' ଦୋଷ ମଇଁଷିର(ମନର) ଅଟେ, ଏହି ଚରାଳୀର (ଦେହର) ବିଚରାର କ'ଣ ଦୋଷ ?

ଆଉ ବାହାରେ ଝାଡୁ-ପହଁରା କଲେ କ'ଣ ଫାଇଦା ? ଯାହା ଆମ ସତ୍ତାରେ ହିଁ ନାହିଁ, ପୁଣି ବିନା କାରଣରେ ଚିତ୍କାର କରିବାର ଅର୍ଥ କ'ଣ ? କିନ୍ତୁ ଭିତରର ସବୁ ଅଳିଆ ପହଁରା ମାରିବାକୁ ପଡ଼ିବ, ଭିତରର ସବୁ ଧୋଇବାକୁ ପଡ଼ିବ । ଏ ତ ବାହାରର ଧୋଇ ପକାନ୍ତି, ଯଦି ଗଙ୍ଗାସ୍ନାନ ପାଇଁ ଯାଆନ୍ତି ତେବେ ମଧ୍ୟ ଦେହକୁ ବାରମ୍ବାର ବୁଡ଼ାନ୍ତି । ଆରେ, ଦେହକୁ ବୁଡ଼ାଇଲେ କ'ଣ ସିଦ୍ଧ ହେବ ? ମନକୁ ବୁଡ଼ାଅ ! ମନକୁ, ବୁଦ୍ଧିକୁ, ଚିତ୍ତକୁ, ଅଂହକାରକୁ, ଏ ସମସ୍ତଙ୍କୁ, ପୁରା ଅନ୍ତଃକରଣକୁ ବୁଡ଼େଇବାର ଅଛି । ଏଥିରେ ସାବୁନ ବି କେବେ ବ୍ୟବହାର କଲେ ନାହିଁ, ପୁଣି ବିଗିଡ଼ିଯିବ ନା ନାହିଁ ?

ଯେପର୍ଯ୍ୟନ୍ତ ବୟସ କମ ଥିବ, ସେପର୍ଯ୍ୟନ୍ତ ଭଲ ରହେ । ପରେ ଦିନକୁ ଦିନ ବିଗିଡ଼ିବାକୁ ଲାଗେ, ପୁଣି ଅଳିଆ ଜମା ହୋଇଚାଲେ । ସେଥିପାଇଁ ମୁଁ କ'ଣ କହିଲି ଯେ ତୋ *ଆଚାର* (ଆଚରଣ) ବାହାରେ ରଖି ଚାଲ ଏବଂ ଏହି ନଅ କଲମ ବୋଲି ଚାଲ । ଏ ଯାହା ବି ସବୁ ମିଛ ଅଛି ତାହାକୁ ବାହାରେ ରଖି ଚାଲ ଏବଂ ଏହି ନଅ କଲମର ଭାବନା କରି ଚାଲ, ତେବେ ଆସନ୍ତା ଜନ୍ମ ହୋଇଗଲା ଉତ୍ତମ !

**ପ୍ରଶ୍ନକର୍ତ୍ତା :** ଯେଉଁମାନେ ଏହି 'ଜ୍ଞାନ' ପ୍ରାପ୍ତ କରି ନଥିବେ, ସେମାନେ ମଧ୍ୟ ଏହି ପ୍ରକାର ଆଚାରରେ ପରିବର୍ତ୍ତନ ଆଣି ପାରିବେ ?

**ଦାଦାଶ୍ରୀ :** ହଁ, ସମସ୍ତେ ପରିବର୍ତ୍ତନ ଆଣି ପାରିବେ । ସମସ୍ତଙ୍କୁ ଏହା କହିବା ପାଇଁ ଛାଡ଼ ଅଛି ।

**ପ୍ରଶ୍ନକର୍ତ୍ତା :** ଯଦି କିଛି ଓଲଟା ହୋଇଯାଏ ତେବେ ପରେ ତାହାକୁ ଧୋଇବା ପାଇଁ ଏହି କଲମ ଏକ ଜବରଦସ୍ତ ଉପାୟ ଅଟେ ।

**ଦାଦାଶ୍ରୀ :** ଏହା ତ ବଡ଼ ପୁରୁଷାର୍ଥ ଅଟେ । ଅର୍ଥାତ ମହାନତମ ବିଜ୍ଞାନ ଏହା ମୁଁ ଖୋଲା କରିଛି । କିନ୍ତୁ ଏବେ ଲୋକଙ୍କୁ ବୁଝାପଡ଼ିବା ଦରକାର ନା ! ସେଥିପାଇଁ ପୁଣି ଅନିବାର୍ଯ୍ୟ କଲି ଯେ ଏତିକି ତୁମକୁ କରିବାର ଅଛି । ପଛେ ବୁଝା ନପଡୁ, କିନ୍ତୁ ଏତିକି(ନଅ କଲମର ଔଷଧ) ପିଇ ଯା ନା !

**ପ୍ରଶ୍ନକର୍ତ୍ତା :** ଭିତର ରୋଗ ଖଲାସ ହୋଇଯାଏ ।

**ଦାଦାଶ୍ରୀ :** ହଁ, ଖଲାସ ହୋଇଯାଏ । 'ଦାଦା' କହନ୍ତି ଯେ 'ପଢ଼ିବ' ତେବେ ବାସ୍ କେବଳ ପଢ଼ିବାର ହିଁ ଅଛି, ତେବେ ମଧ୍ୟ ବହୁତ ହୋଇଗଲା ! ଏହା ତ ହଜମ କରିବା ପାଇଁ ନୁହେଁ । ଏହା ତ ପୁଡ଼ିଆ ପାଣିରେ ଗୋଳାଇ ପିଇ ଯା ଏବଂ ପୁଣି ଆରାମରେ ବୁଲିବା ପରି ଅଟେ !

**ପ୍ରଶ୍ନକର୍ତ୍ତା :** କ'ଣ ଏହା ଠିକ ଯେ ଭାବ କଲେ ପାତ୍ରତା ବଢ଼େ ?

**ଦାଦାଶ୍ରୀ :** ଭାବ ହିଁ ବାସ୍ତବିକ ପୁରୁଷାର୍ଥ ଅଟେ । ଅନ୍ୟ ସବୁ ବେକାର କଥା । କର୍ତ୍ତାପଦ ତାହା ତ ବନ୍ଧନପଦ ଅଟେ ଏବଂ ଏହି ଭାବ, ତାହା ମୁକ୍ତ କରାଇବାବାଲା ପଦ ଅଟେ । 'ଏମିତି କର, ସେମିତି କର, ଅମୁକ କର', ସେଥିପାଇଁ ପୁଣି ଲୋକେ ସେଥିରେ ବାନ୍ଧି ହୋଇଗଲେ ନା !

## ଭାବନା ଫଳିବ, ଆସନ୍ତା ଜନ୍ମରେ

**ପ୍ରଶ୍ନକର୍ତ୍ତା :** ଯେବେ ଏପରି ବ୍ୟବହାର ହୋଇଯାଏ ଯେ ଆମଦ୍ୱାରା କାହାର ଅହଂକାରର *ପ୍ରମାଣ* ଆହତ ହୋଇଯାଏ, ସେପରି ସମୟରେ ଏହି କଲମ ବୋଲି ପାରିବୁ ଯେ କାହାର ବି ଅହମର *ପ୍ରମାଣ* ନ ଦୁଭେ... ?

**ଦାଦାଶ୍ରୀ :** ସେତେବେଳେ ତ ଆମେ 'ଚନ୍ଦୁଭାଇ'କୁ କହିବା ଯେ, 'ଭାଇ, ପ୍ରତିକ୍ରମଣ କର, ତା'କୁ ଦୁଃଖ ହେଲା, ତାହାର ପ୍ରତିକ୍ରମଣ କର ।' ଏବଂ ଅନ୍ୟ ଛୋଟ-ଛୋଟ କଥାରେ ତ ଝଂଝଟ୍ କରିବାର ନାହିଁ । କିନ୍ତୁ, ଏପରି କାହାର ଅହମ୍ ଆହତ ହୋଇଯାଏ, ଏପରି ଭାରୀ ଲକ୍ଷଣ ନହେବା ଉଚିତ । ଏବଂ ସାମାନ୍ୟ ଦୁଃଖ ଯଦି ହୋଇଯାଏ ତେବେ ଆମକୁ 'ଚନ୍ଦୁଭାଇ' ପାଖରୁ ପ୍ରତିକ୍ରମଣ କରାଇବା ଉଚିତ ।

ଏହା ତ ଭାବନା କରିବାର ଅଛି । ଏବେ ଆଉ ଏକ ଜନ୍ମ ତ ବାକି ଅଛି ନା, ସେଥିପାଇଁ ଏହି ଭାବନା ଫଳ ଦେବ । ସେତେବେଳେ ତ ତୁମେ ଭାବନାରୂପ ହିଁ

ହୋଇଯାଇଥିବ । ଭାବନା ଯେପରି ଲେଖାଯାଇଛି ସେହିପରି ହିଁ ବ୍ୟବହାର ହେବ, କିନ୍ତୁ ଆସନ୍ତା ଜନ୍ମରେ ! ଏବେ ମଞ୍ଜି ବୁଣା ହୋଇଛି, ଏଣୁ ତୁମେ ଯଦି କହିବ ଯେ 'ଆଣ, ତାହାକୁ ଭିତରୁ ରାମ୍ପି-ଖୋଳି ଖାଇଯିବି' ତେବେ ତାହା ଚଳିବ ନାହିଁ ।

**ପ୍ରଶ୍ନକର୍ତ୍ତା :** ପରିଣାମ ଏହି ଜନ୍ମରେ ନୁହେଁ, ଆସନ୍ତା ଜନ୍ମରେ ଆସିବ ?

**ଦାଦାଶ୍ରୀ :** ହଁ, ଏବେ ଏକ-ଦୁଇ ଜନ୍ମ ବାକି ଅଛି । ସେଥିପାଇଁ ଏହି ମଞ୍ଜି ବୁଣୁଛେ, ଅର୍ଥାତ ଆସନ୍ତା ଜନ୍ମରେ କ୍ଲିୟର(ସ୍ୱଚ୍ଛ) ହୋଇଯାଉ । ଏହା ତ ଯାହାକୁ ମଞ୍ଜି ବୁଣିବାର ଥିବ ତା' ପାଇଁ ।

**ପ୍ରଶ୍ନକର୍ତ୍ତା :** ତେବେ ଏହା ନିରନ୍ତର ଅର୍ଥାତ ଯେବେ-ଯେବେ ପ୍ରସଙ୍ଗ ହେବ ସେହି ହିସାବରେ ?

**ଦାଦାଶ୍ରୀ :** ନା । ପ୍ରସଙ୍ଗ ସହ କିଛି ନେବା-ଦେବା ନାହିଁ । ପ୍ରସଙ୍ଗ ସହ କ'ଣ ନେବା-ଦେବା ? ପ୍ରସଙ୍ଗ ତ ନିରାଧାର ଅଟେ ବିଚରା । ଆଉ ଏହି ଭାବନା ତ ଆଧାରିତ ଜିନିଷ ଅଟେ । ଏ ଭାବନା ତ ସାଥିରେ ଆସିବ ଆଉ ପ୍ରସଙ୍ଗ ତ ଚାଲିଯିବ ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ପ୍ରସଙ୍ଗର ଆଧାରରେ ହିଁ ଏହି ଭାବନା କରାଯାଇ ପାରିବ ନା ?

**ଦାଦାଶ୍ରୀ :** ନା । ପ୍ରସଙ୍ଗ ସହ କିଛି ନେବା-ଦେବା ନାହିଁ । ଭାବନା ହିଁ ସାଥିରେ ଆସିବ । ପ୍ରସଙ୍ଗ ନିରାଧାର ଅଟେ, ତାହା ତ ଚାଲିଯିବ । କେତେ ବି ଭଲ ପ୍ରସଙ୍ଗ ହେଉ କିନ୍ତୁ ତାହା ମଧ୍ୟ ଚାଲିଯିବ । କାରଣ ସେ ସଂଯୋଗ ମିଳିସାରିଛି ଏବଂ ଏହି ଭାବନା କରିବାର ଅଛି । ଯାହାର ସଂଯୋଗ ମିଳିବା ଏବେ ବାକି ଅଛି ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ଏହି ପ୍ରସଙ୍ଗ ଯୋଗୁଁ ଯେବେ ନିଜର ଭାବ ବଦଳେ, ସେତେବେଳେ ଏହି ଭାବନାର ପ୍ରୟୋଗ କରି ପୁଣି ଭାବ ପରିବର୍ତ୍ତନ କରିବାକୁ ହେବ ନା ?

**ଦାଦାଶ୍ରୀ :** କିନ୍ତୁ ତାହା କୌଣସି ହେଲ୍ପ କରିବ ନାହିଁ । ପୂର୍ବେ ଯେତିକି କରିଥିବ, ତାହା ଆଜି ହେଲ୍ପ କରେ । ହଁ, ଏପରି ହୋଇପାରେ ଯେ ପୂର୍ବେ ଅଳ୍ପ-ବହୁତ କରିଥିବ ସେଥିପାଇଁ ଏହି ଜନ୍ମରେ ସବୁ ପରିବର୍ତ୍ତନ ହେଉଛି ।

**ପ୍ରଶ୍ନକର୍ତ୍ତା :** ଅର୍ଥାତ ପୂର୍ବଜନ୍ମର ଭାବ ଅନୁସାରେ ହିଁ ପରିଣାମ ରୂପରେ ଆଜିର ପ୍ରସଙ୍ଗ ଆସେ ?

**ଦାଦାଶ୍ରୀ :** ସେହି ପରିଣାମ ଆସେ, ଅଲଗା ଆସେ ନାହିଁ । ଭାବ ଅର୍ଥାତ ବୀଜ

ଏବଂ ଦ୍ରବ୍ୟ ଅର୍ଥାତ ପରିଣାମ । ବାଜରାର ଗୋଟିଏ ମଞ୍ଜି ବୁଣିବା ତେବେ କେତେ ଗୁଡ଼ିଏ ବାଜରା ଫଳେ !

ଏହି କଲମ ତ କେବଳ କହିବାର ହିଁ ଅଛି । ପ୍ରତିଦିନ ଭାବନା ହିଁ କରିବାର ଅଛି । ଏହା ତ ମଞ୍ଜି ବୁଣିବାର ଅଛି । ବୁଣିବା ପରେ ଯେବେ ଫଳ ଆସିବ ସେତେବେଳେ ଦେଖିନେବ । ସେପର୍ଯ୍ୟନ୍ତ ଖତ ପକାଉ ଥାଅ । ବାକି, ଏହି ପ୍ରସଙ୍ଗରେ ଏପରି କିଛି ପରିବର୍ତ୍ତନ ଆଣିବାର ନାହିଁ, କିଛି ବି । ଆଉ ଏହା ଯେଉଁ ଅଛି, ତାହା ପୁରୁଣାବାଲା ହିଁ ଅଟେ ।

ଅର୍ଥାତ ଏହି ନଅ କଲମ କ'ଣ କହେ ? 'ହେ ଦାଦା ଭଗବାନ ! ମୋତେ ଶକ୍ତି ଦିଅ ।' ଏବେ ଲୋକେ କ'ଣ କହନ୍ତି ? 'ଏହା ତ ପାଳନ କରାଯାଇ ପାରିବ ଏପରି ନୁହେଁ ।' କିନ୍ତୁ ଏହା କରିବା ପାଇଁ ନୁହେଁ । ଆରେ, ଅବୁଝାଙ୍କ ପରି କଥା କାହିଁକି କହୁଛ ! ଏହି ସଂସାରରେ ସମସ୍ତେ କହିଲେ ଯେ, 'କର, କର, କର' । ଆରେ, କରିବାର ନଥାଏ, ବୁଝିବାର ହିଁ ଥାଏ । ଏବଂ ପୁଣି 'ମୁଁ ଏପରି କରିବାକୁ ଚାହୁଁନାହିଁ (ଏପରି ଯେଉଁ ହୋଇଗଲା) ତାହାର ମୁଁ ପଶ୍ଚାତାପ କରୁଛି ।' ଏପରି 'ଦାଦା ଭଗବାନ'ଙ୍କ ପାଖରେ କ୍ଷମା ମାଗିବାର ଅଛି । ଏବେ 'ଏହା କରିବି ନାହିଁ' ଏପରି ଯେଉଁ କହିଲ, ସେବେଠାରୁ ତୁମ ଅଭିପ୍ରାୟ ଅଲଗା ହୋଇଗଲା । ପରେ ଯଦି କରୁଥିବ, ତାହାର ଅସୁବିଧା ନାହିଁ । କିନ୍ତୁ ଅଭିପ୍ରାୟ ଅଲଗା ହେଲା ମାନେ ମୁକୁଳିଗଲା ! ଏହା ମୋକ୍ଷ ମାର୍ଗର ରହସ୍ୟ ଅଟେ, ତାହା ଜଗତର ଲକ୍ଷ୍ୟରେ ନଥାଏ ନା !

**ପ୍ରଶ୍ନକର୍ତ୍ତା :** 'ଡିସ୍‌ଚାର୍ଜ' ରେ ହିଁ ପରିବର୍ତ୍ତନ ଚାହାଁନ୍ତି, କ'ଣ ପରିଣାମରେ ହିଁ ପରିବର୍ତ୍ତନ ଆଣିବାକୁ ଚାହାଁନ୍ତି ଏ ଲୋକେ?

**ଦାଦାଶ୍ରୀ :** ହଁ । ଅର୍ଥାତ ଜଗତକୁ ଏହି ଲକ୍ଷ୍ୟ ମାଲୁମ ହିଁ ନାହିଁ, ଏହାର ଦୃଷ୍ଟି ହିଁ ନାହିଁ । ମୁଁ ତା'କୁ ଅଭିପ୍ରାୟରୁ ମୁକ୍ତ କରିବାକୁ ଚାହୁଁଛି । ଏବେ 'ଏହା ଭୁଲ ଅଟେ' ଏପରି ତୁମର ଅଭିପ୍ରାୟ ହୋଇଗଲା । କାରଣ ପୂର୍ବେ 'ଏହା ଠିକ ଅଟେ' ଏପରି ଅଭିପ୍ରାୟ ଥିଲା ଏବଂ ସେଥିପାଇଁ ସଂସାର ତିଷ୍ଠି ରହିଛି ଏବଂ ଏବେ 'ଏହା ଭୁଲ ଅଟେ' ଏପରି ଅଭିପ୍ରାୟ ହେଲା, ତେଣୁ ମୁକ୍ତ ହେଲା । ଏବେ ଏହି ଅଭିପ୍ରାୟ କୌଣସି ବି ସଂଯୋଗରେ ପୁଣି ନ ବଦଳିବା ଉଚିତ !

ଏହି ନଅ କଲମ ପ୍ରତିଦିନ ବୋଲିବା ଦ୍ୱାରା ଧୀରେ-ଧୀରେ କାହା ସହିତ ଝଗଡ଼ା-ଝାଟି କିଛି ବି ରହିବ ନାହିଁ । କାରଣ ନିଜର ଭାବ ନଷ୍ଟ ହୋଇଯାଇଛି । ଏବେ

ଯାହା 'ରୀଏକ୍ସନାରୀ' (ପ୍ରତ୍ୟାଘାତୀ) ଅଟେ, ସେତିକି ହିଁ ବାକି ଅଛି । ତାହା ଧୀରେ-ଧୀରେ କମ ହୋଇଯିବ ।

## ମହାତ୍ମାଙ୍କ ପାଇଁ, ତାହା ଚାର୍ଜ ନା ଡିସ୍‌ଚାର୍ଜ ?

**ପ୍ରଶ୍ନକର୍ତ୍ତା :** ଭାବ ଏବଂ ଭାବନା, ଏ ଦୁଇ ମଧ୍ୟରେ କ'ଣ ଅନ୍ତର ?

**ଦାଦାଶ୍ରୀ :** ସେ ଉଭୟ 'ଚନ୍ଦୁଭାଇ'ର ! କିନ୍ତୁ ତୁମେ ଠିକ କହୁଛ, ଭାବ ଏବଂ ଭାବନାରେ ଅନ୍ତର ଅଛି ।

**ପ୍ରଶ୍ନକର୍ତ୍ତା :** ଭାବନା ପବିତ୍ର ଅଟେ ଆଉ ଭାବ ତ ଭଲ ବି ହୁଏ ଏବଂ ଖରାପ ବି ହୁଏ ।

**ଦାଦାଶ୍ରୀ :** ନା । ଭାବନା ପବିତ୍ର ଅଟେ ଏପରି ନୁହେଁ । ଭାବନା ତ ଅପବିତ୍ରକୁ ମଧ୍ୟ ଲାଗୁହୁଏ । କାହାକୁ ଘର ଜଳାଇ ଦେବାର ଭାବନା ହୁଏ ଏବଂ କାହାକୁ ଘର ତିଆରି ଦେବାର ମଧ୍ୟ ଭାବନା ହୁଏ । ଅର୍ଥାତ ଭାବନାର ଉପଯୋଗ ଉଭୟ ପକ୍ଷରେ ହୋଇପାରିବ, କିନ୍ତୁ ଭାବ ତାହା ଚାର୍ଜ ଅଟେ ଏବଂ ଭାବନା ଡିସ୍‌ଚାର୍ଜ ଅଟେ ।

ଆମକୁ ଯେଉଁ ଭିତରେ ହେଉଛି ଯେ ମୋତେ ଏପରି କରିବାର ଅଛି, ଏପରି ଯେଉଁ ଭାବ ହେଉଛି, ତାହା ମଧ୍ୟ ଭାବନା ଅଟେ, ତାହା ଭାବ ନୁହେଁ । ବାସ୍ତବରେ ଭାବ ତାହା ଅଟେ ଯାହା ଚାର୍ଜ ହୁଏ ।

ଅର୍ଥାତ ଭାବକର୍ମରୁ ଏହି ସଂସାର ସର୍ଜିତ ହୋଇଛି । ଆମଦ୍ୱାରା ଯଦି କୌଣସି କାର୍ଯ୍ୟ ନ ହୁଏ, ତଥାପି ଭାବ ତ ଏହିପରି ରଖିବ । ଆମର ଏଠି (ଅକ୍ରମ ମାର୍ଗରେ) ଭାବକର୍ମ (ଚାର୍ଜ) ଉଡ଼ାଇ ଦେଇଛି । ବାହାରର ଲୋକଙ୍କୁ ଭାବକର୍ମ କରିବା ଉଚିତ । ଅର୍ଥାତ ଶକ୍ତି ମାଗିବା ଉଚିତ । ଯାହାକୁ ଯେଉଁ ଶକ୍ତି ଦରକାର, ସେ ଶକ୍ତି ଦାଦା ଭଗବାନଙ୍କ ପାଖରୁ ମାଗିବା ଉଚିତ ।

**ପ୍ରଶ୍ନକର୍ତ୍ତା :** ବାହାରର, ଜଗତର ଯେଉଁ ଲୋକ, ସେମାନଙ୍କୁ ଏହି ଶକ୍ତି ମାଗିବା ଉଚିତ, ତେବେ ଆମ ମହାତ୍ମା ଯେଉଁ ଶକ୍ତି ମାଗନ୍ତି, ଭାବନା କରନ୍ତି, ତାହା କେଉଁଥିରେ ଯାଏ ?

**ଦାଦାଶ୍ରୀ :** ମହାତ୍ମା ଯେଉଁ ମାଗନ୍ତି, ତାହା ଡିସ୍‌ଚାର୍ଜ ଅଟେ । କାରଣ ଭାବନା ଦୁଇ ପ୍ରକାରର, ଚାର୍ଜ ଏବଂ ଡିସ୍‌ଚାର୍ଜ ଉଭୟ । ଜଗତର ବ୍ୟବହାରରେ ଲୋକଙ୍କୁ ମଧ୍ୟ ଭାବନା ହୁଏ ଏବଂ ଏଠି ଆମକୁ ମଧ୍ୟ ଭାବନା ହୁଏ । କିନ୍ତୁ ଆମର ଭାବନା ଡିସ୍‌ଚାର୍ଜ

ରୂପରେ ଏବଂ ସେମାନଙ୍କୁ ଚାର୍ଜ-ଡିସ୍‌ଚାର୍ଜ ଉଭୟ ରୂପରେ ହୁଏ । କିନ୍ତୁ ଆମକୁ ଶକ୍ତି ମାଗିବାରେ କ'ଣ ଅସୁବିଧା ?

**ପ୍ରଶ୍ନକର୍ତ୍ତା :** ବାହାର ଲୋକେ ନଅ କଲମରେ ଯଦି ଶକ୍ତି ମାଗନ୍ତି, ତେବେ ତାହା ଭାବ କୁହାଯାଏ, ଆଉ ମହାତ୍ମା ଶକ୍ତି ମାଗନ୍ତି, ତେବେ ତାହା ଭାବ କୁହାଯାଏ ନାହିଁ ?

**ଦାଦାଶ୍ରୀ :** ବାହାରର ଲୋକଙ୍କ ପାଇଁ ତାହା ଭାବ କୁହାଯାଏ ଆଉ ଆମ ମହାତ୍ମାଙ୍କ ପାଇଁ ଏହା ଭାବନା ଅଟେ । ଠିକ କଥା । ତାହା ଭାବ କୁହାଯାଏ, ଚାର୍ଜ କୁହାଯାଏ ଏବଂ ମହାତ୍ମାଙ୍କ ପାଇଁ ଡିସ୍‌ଚାର୍ଜ କୁହାଯାଏ, ଭାବ କୁହାଯାଏ ନାହିଁ ।

## ଭାବ, ଏକ୍‌ଜାକ୍ଟ ଡିଜାଇନ୍ ଅନୁସାରେ

**ପ୍ରଶ୍ନକର୍ତ୍ତା :** ଏହି ନଅ କଲମରେ ଯେପରି କୁହାଯାଇଛି, ପ୍ରଥମରୁ ମୋର ସେହିପରି ଭାବନା ଅଛି, ଇଚ୍ଛା ଅଛି, ଅଭିପ୍ରାୟ ବି ଅଛି ।

**ଦାଦାଶ୍ରୀ :** ଏପରି ଲାଗେ ନିଶ୍ଚିତ ଯେ ପ୍ରଥମରୁ ଏହିପରି ହିଁ କରୁଥିଲି, କିନ୍ତୁ ବାସ୍ତବରେ ସେପରି ନୁହେଁ । ଏହି କଥାରେ ଅନୁରାଗ ଅଛି, ଏ କଥା ଠିକ କିନ୍ତୁ ସେ ଅନୁରାଗ ନିଶ୍ଚିତ ରୂପରେ ଏହିପରି ହେବା ଉଚିତ । ଡିଜାଇନ୍ ପୂର୍ବକ ହେବା ଉଚିତ । ଅନୁରାଗ ତ ଥାଏ ଯେ ସାଧୁ-ସନ୍ଥଙ୍କୁ ହଇରାଣ କରିବା ଉଚିତ ନୁହେଁ ଏପରି ଇଚ୍ଛା ତ ଥାଏ ! କିନ୍ତୁ ତାହା ଡିଜାଇନ୍ ଅନୁସାରେ ହେବା ଉଚିତ ।

**ପ୍ରଶ୍ନକର୍ତ୍ତା :** ଡିଜାଇନ୍ ଅନୁସାରେ ଅର୍ଥାତ କିପରି, ଦାଦାଜୀ ?

**ଦାଦାଶ୍ରୀ :** ସେଥିରେ ଯେଉଁ ଲେଖା ହୋଇଛି ସେହି ଅନୁସାରେ, ଏକ୍‌ଜାକ୍ଟନେସ୍ (ଯଥାର୍ଥ ରୂପେ) । ନହେଲେ ସେମିତିରେ ତ ମୋତେ ସାଧୁ-ସନ୍ଥଙ୍କୁ ହଇରାଣ କରିବାର ନାହିଁ ଏପରି ଥାଏ, ତଥାପି ତାଙ୍କୁ ହଇରାଣ କରନ୍ତି । ତାହାର କାରଣ କ'ଣ ? ତେବେ କହିବା, ଡିଜାଇନ୍ ଅନୁସାରେ ନୁହେଁ ତା'ର । ତାହା ଯଦି ଡିଜାଇନ୍ ଅନୁସାରେ ହେବ ତେବେ ଏପରି ହେବ ନାହିଁ ।

**ପ୍ରଶ୍ନକର୍ତ୍ତା :** ଏହି ଯେଉଁ ନଅ କଲମ ଅଛି, ତାହାକୁ ଯଥାର୍ଥ ରୂପେ ବୁଝି ଜୀବନରେ ଆଣିବା ଉଚିତ ?

**ଦାଦାଶ୍ରୀ :** ନା, ଏପରି କିଛି ବୁଝିବିଚାରି ଆଣିବାର ନାହିଁ । ମୁଁ କ'ଣ କହୁଛି ଯେ ଏହା ମୁଁ ଯେଉଁ କହିଛି ଏହିପରି କେବଳ ଶକ୍ତି ମାଗ । ସେ ଶକ୍ତି ହିଁ ତୁମକୁ ସେଠି ଏକ୍‌ଜାକ୍ଟନେସ୍‌ରେ ଆଣି ରଖିଦେବ । ତୁମକୁ ବୁଝିବିଚାରି କରିବାର ନାହିଁ । ଏପରି

ହୋଇପାରିବ ହିଁ ନାହିଁ, ମନୁଷ୍ୟ କରିପାରିବ ହିଁ ନାହିଁ । ଯଦି ବୁଝିବିଚାରି କରିବାକୁ ଯିବା ତେବେ ହେବାର ନାହିଁ । ପ୍ରକୃତିକୁ ସମର୍ପି ଦିଅ । ସେଥିପାଇଁ 'ହେ ଦାଦା ଭଗବାନ! ଶକ୍ତି ଦିଅନ୍ତୁ ।' ଏପରି ଶକ୍ତି ମାଗିବା ଦ୍ୱାରା ଆପେ ଆପେ ଶକ୍ତି ପ୍ରକଟ ହେବ । ପରେ ଯଥାର୍ଥ ରୂପରେ ହେବ ।

ଏହା ବହୁତ ବଡ଼ ଜିନିଷ ଅଟେ । କିନ୍ତୁ ଯେପର୍ଯ୍ୟନ୍ତ ବୁଝା ନପଡ଼େ ସେପର୍ଯ୍ୟନ୍ତ ସବୁ ଏମିତି ହିଁ!

ମୁଁ ଏପରି କାହିଁକି କହିଥିବି ଯେ ଶକ୍ତି ମାଗିବ, ଶକ୍ତି ଦିଅ, ଏପରି ? ନିଜେ ଡିଜାଇନ୍ କରିପାରିବ ନାହିଁ । ମୂଳ ଡିଜାଇନ୍ କିପରି କରିପାରିବ ? ଅର୍ଥାତ (ଆଜି) ଏହା ଇଫେକ୍ଟ ଅଟେ । ଏ ଯେଉଁ ଶକ୍ତି ମାଗୁଛେ, ତାହା କଜ୍ ଅଟେ ଏବଂ ଇଫେକ୍ଟ ପରେ ଆସିବ । ସେ ଇଫେକ୍ଟ ବି କାହାଦ୍ୱାରା ଆସେ ? ଦାଦା ଭଗବାନ ଦ୍ୱାରା ପ୍ରବନ୍ଧିତ । ଇଫେକ୍ଟ ଭଗବାନଙ୍କ ଥ୍ରୁ (ଦ୍ୱାରା) ଆସିବା ଉଚିତ ।

ଅର୍ଥାତ ନଅ କଲମ ଅନୁସାରେ ଯଦି ଶକ୍ତି ମାଗିଚାଲିବା ତେବେ ମନକୁ ମନ ପୁଣି ନଅ କଲମରେ ରହିବା, କିଛି ବର୍ଷ ମଧ୍ୟରେ ।

## ଜଗତର ସମ୍ବନ୍ଧରୁ ମୁକ୍ତ ହେବା ପାଇଁ

**ପ୍ରଶ୍ନକର୍ତ୍ତା :** ଏହି ଯେଉଁ ନଅ କଲମ ଦେଇଛନ୍ତି ତାହା ବିଚାର, ବାଣୀ ଏବଂ ବ୍ୟବହାରର ଶୁଦ୍ଧତା ପାଇଁ ହିଁ ଦେଇଛନ୍ତି ନା ?

**ଦାଦାଶ୍ରୀ :** ନା, ନା । ଅକ୍ରମ ମାର୍ଗରେ ଏହାର ଆବଶ୍ୟକତା ହିଁ ନାହିଁ । ଏହି ନଅ କଲମ ତ ତୁମ ଅନନ୍ତ ଅବତାରର ସମସ୍ତଙ୍କ ସହିତ ଯାହା ବି ହିସାବ ବନ୍ଧା ହୋଇଛି, ସେହି ହିସାବ ସବୁରୁ ମୁକ୍ତ ହେବା ପାଇଁ ଦେଇଛି । ତୁମ ଖାତା ସଫା କରିବା ପାଇଁ ଦେଇଛି ।

ଏଣୁ ଏହି ନଅ କଲମ ବୋଲିବା ଦ୍ୱାରା (ଲୋକଙ୍କ ସହ ବନ୍ଧା ହୋଇଥିବା) ତାର ଛୁଟିଯିବ । ଲୋକଙ୍କ ସହ ତାର ଯୋଡ଼ି ହୋଇଛି, ସେହି ଋଣାନୁବନ୍ଧ ଯୋଗୁଁ ମୋକ୍ଷ ଅଟକିଛି । ଅର୍ଥାତ ଏହି ଋଣାନୁବନ୍ଧରୁ ମୁକ୍ତି ପାଇଁ ଅଟେ ଏହି ନଅ କଲମ ।

ଏହାକୁ ବୋଲିବା ଦ୍ୱାରା ତୁମର ଆଜି ପର୍ଯ୍ୟନ୍ତ ଯେଉଁ ଦୋଷ ହୋଇଛି, ସେ ସବୁ ଢିଲା ହୋଇଯିବ । ଏବଂ ପୁଣି ତାହାର ପରିଣାମ ତ ଆସିବ । ସବୁ ଦୋଷ ଜଳି ଯାଇଥିବା ଦଉଡ଼ି ପରି ହୋଇଯାନ୍ତି, ପୁଣି ଏମିତି ହାତ ଲଗାଇବା ମାତ୍ରେ ଉଡ଼ିଯିବେ ।

**ପ୍ରଶ୍ନକର୍ତ୍ତା :** ଦୋଷର ପ୍ରତିକ୍ରମଣ କରିବା ପାଇଁ ଯଦି ମୁଁ ନଅ କଲମ ପ୍ରତିଦିନ ବୋଲିବି ତେବେ ସେଥିରୁ ଶକ୍ତି ମିଳିବ କି ?

**ଦାଦାଶ୍ରୀ :** ତୁମେ ନଅ କଲମ ବୋଲିବ, ତାହା ଅଲଗା ଏବଂ ଏହି ଦୋଷର ପ୍ରତିକ୍ରମଣ କରିବା, ତାହା ଅଲଗା । ଯେଉଁ ଦୋଷ ହେଉଛି, ତାହାର ପ୍ରତିକ୍ରମଣ ତ ପ୍ରତିଦିନ କରିବା ଉଚିତ ।

ଅନନ୍ତ ଅବତାରରୁ ଲୋକଙ୍କ ସହିତ ରାଗ୍-ଦ୍ୱେଷର ଯେଉଁ ହିସାବ ହୋଇଥାଏ, ସେ ସମସ୍ତ ଋଣାନୁବନ୍ଧ ଏହି ନଅ କଲମ ବୋଲିବା ଦ୍ୱାରା ଛୁଟିଯିବ । ଏହା ପ୍ରତିକ୍ରମଣ ଅଟେ, ବହୁତ ବଡ଼ ପ୍ରତିକ୍ରମଣ । ଏହି ନଅ କଲମରେ ସାରା ସଂସାର(ଜଗତ) ର ପ୍ରତିକ୍ରମଣ ଆସିଯାଏ । ଏହା ଭଲ ଭାବେ କରିବ । ମୁଁ ତୁମକୁ ଦେଖାଇ ଦେଉଛି, ପୁଣି ମୁଁ ତ ମୋ ଦେଶ (ମୋକ୍ଷ) କୁ ଚାଲିଯିବି ନା !

## ସାରା ଜୀବନ ନଅ କଲମ ଅନୁସାରେ ବ୍ୟବହାର, ଦାଦାଙ୍କର

ଏପରି ଅଟେ, ଏହି କାଳର ହିସାବରେ ଲୋକଙ୍କ ପାଖରେ ଏତେ ଶକ୍ତି ନାହିଁ । ଯେତିକି ଶକ୍ତି ଅଛି ସେତିକି ହିଁ ଦେଇଛି । ଯେଉଁମାନେ ଏତିକି ଭାବନା କରିବେ ସେମାନଙ୍କର ଆସନ୍ତା ଜନ୍ମରେ ମନୁଷ୍ୟତ୍ୱ ଯିବ ନାହିଁ, ଏହାର ଗ୍ୟାରେଣ୍ଟି ଦେଉଛି । ନହେଲେ ଆଜି ଅଶି ପ୍ରତିଶତ ବି ମନୁଷ୍ୟତ୍ୱ ରହିବ ନାହିଁ ଏପରି ହୋଇଗଲାଣି ।

ମୋର ଏହି ନଅ କଲମରେ ଉଚ୍ଚତମ ଭାବନା ନିହିତ ଅଛି । ସାରା ସାରାଂଶ ଏଥିରେ ସମାହିତ । ଏହି ନଅ କଲମ, ଯାହା ମୁଁ ଆଜୀବନ ପାଳନ କରି ଆସିଛି, ତାହାର ଏହା ପୁଞ୍ଜି ଅଟେ । ଅର୍ଥାତ ଏହା ମୋର ନିତିଦିନିଆ ମାଲ୍ ଅଟେ ଯାହା ପ୍ରକାଶ କରିଛି, ଅନ୍ତତଃ ଲୋକଙ୍କ କଲ୍ୟାଣ ହେଉ ସେଥିପାଇଁ । ଅନେକ ବର୍ଷରୁ, ଚାଳିଶ-ଚାଳିଶ ବର୍ଷରୁ ନିରନ୍ତର ଏହି ନଅ କଲମ ପ୍ରତିଦିନ ମୋ ଭିତରେ ଚାଲୁ ହିଁ ରହିଛି । ଯାହା ଲୋକଙ୍କ ପାଇଁ ମୁଁ ପ୍ରକାଶ କରିଛି (ବତାଇଛି) ।

**ପ୍ରଶ୍ନକର୍ତ୍ତା :** ଆଜି ତ ଆମେ 'ହେ ଦାଦା ଭଗବାନ ! ମୋତେ ଶକ୍ତି ଦିଅନ୍ତୁ ।' ଏପରି କହୁଛୁ । ତେବେ ଏହି ନଅ କଲମ ଆପଣ କାହାକୁ ସମ୍ବୋଧିତ କରୁଥିଲେ ?

**ଦାଦାଶ୍ରୀ :** ସେ 'ଦାଦା ଭଗବାନ' ନୁହେଁ କିନ୍ତୁ ଅଲଗା ନାମ ଥିବ । କିନ୍ତୁ ନାମ ନିଶ୍ଚିତ ଥିବ, ତାଙ୍କୁ ହିଁ ସମ୍ବୋଧିତ କରି କହୁଥିଲି । ତାଙ୍କୁ 'ଶୁଦ୍ଧାତ୍ମା' କୁହ ଅବା ଯାହା ଇଚ୍ଛା କୁହ । ତାହା ତାଙ୍କୁ ହିଁ ସମ୍ବୋଧିତ କରି କହୁଥିଲି ।

କ୍ରମିକ ମାର୍ଗର ଏତେ ବଡ଼ ଶାସ୍ତ୍ର ପଢ଼ିବା ଅଥବା କେବଳ ଏହି ନଅ କଲମ

ବୋଲିବା, ତେବେ ମଧ୍ଯ ବହୁତ ହୋଇଗଲା ! ଏହି ନଅ କଲମରେ ଏତେ ଶକ୍ତି ଭରି ରହିଛି । ଗଜବ ଶକ୍ତି ଅଛି, କିନ୍ତୁ ଏହା ବୁଝା ପଡ଼େନାହିଁ ନା! ତାହା ତ ଆମେ ବୁଝି ପାରୁନେ ନା! ଏହା ତ ଯଦି ମୁଁ ବୁଝାଇବି ତେବେ ବୁଝାପଡ଼ିବ ଆଉ ଏହାର ମୂଲ୍ୟ ବୁଝାପଡ଼ିଲା ଏପରି କେବେ କହିବି ଯେ ଯେବେ କେହି ଆସି ମୋତେ କହିବ ଯେ, ‘ଏହି ନଅ କଲମ, ମୋତେ ବହୁତ ଭଲ ଲାଗିଲା ।’ ଏବଂ ବୁଝିବା ଯୋଗ୍ୟ ଅଟେ ଏ ସମସ୍ତ ନଅ କଲମ ।

ଏହି ନଅ କଲମ କୌଣସି ଶାସ୍ତ୍ରରେ ନାହିଁ । କିନ୍ତୁ ମୁଁ ଯାହାର ପାଳନ କରୁଛି ଏବଂ ଯାହା ସର୍ବଦା ମୋର ଅମଲରେ ହିଁ ଅଛି, ତାହା ତୁମକୁ କରିବା ପାଇଁ ଦେଉଛି । ମୋର ବ୍ୟବହାର ଯେପରି ଅଟେ ସେହିପରି ଏହି କଲମ ଲେଖାଯାଇଛି । ଏହି ନଅ କଲମ ଅନୁସାରେ ମୋର ବ୍ୟବହାର ହୁଏ, ତଥାପି ମୁଁ ଭଗବାନ କୁହାଯିବି ନାହିଁ । ଭଗବାନ ତ, ଯିଏ ଭିତରେ ଅଛନ୍ତି, ସେ ଭଗବାନ ! ବାକି, କୌଣସି ମନୁଷ୍ୟଦ୍ୱାରା ଏପରି ବ୍ୟବହାର ହୋଇପାରିବ ନାହିଁ ।

ଚଉଦ ଲୋକର ସାର ଅଛି ଏତିକିରେ । ଏ ନଅ କଲମ ଯେଉଁ ଲେଖାହୋଇଛି, ସେଥିରେ ଚଉଦ ଲୋକର ସାର ଅଛି । ପୂରା ଚଉଦ ଲୋକର ଯେଉଁ ଦହି, ତାହାକୁ ମନ୍ଥି ଏହା ଲହୁଣୀ ବାହାର କରି ରଖିଛି । ସେଥିପାଇଁ ଏମାନେ ସମସ୍ତେ କେତେ ପୁଣ୍ୟବାନ ଯେ (ଅକ୍ରମ ମାର୍ଗର) ଲିଫ୍ଟରେ ବସି-ବସି ମୋକ୍ଷ ଯାଉଛନ୍ତି ! ହଁ, ସର୍ତ୍ତ କେବଳ ଏତିକି ଯେ ହାତ ବାହାରକୁ କାଢ଼ିବ ନାହିଁ !

ଏ ନଅ କଲମ ତ କେଉଁଠି ନଥାଏ । ନଅ କଲମ ତ ପୂର୍ଣ୍ଣପୁରୁଷ ହିଁ ଲେଖି ପାରିବେ । ସେ (ସାଧାରଣତଃ) ଥାଆନ୍ତି ନାହିଁ ନା, ସେ ଯଦି ଥିବେ ତେବେ ଲୋକଙ୍କ କଲ୍ୟାଣ ହୋଇଯାଏ !

## ବୀତରାଗ ବିଜ୍ଞାନର ସାର

ଏହି ଭାବନା କରିବା ସମୟରେ କିପରି ହେବା ଉଚିତ ? ପଢ଼ିବା ସମୟରେ ପ୍ରତ୍ୟେକ ଶବ୍ଦ ଆଖି ସାମ୍ନାରେ ଦେଖାଯିବା ଉଚିତ । ଯଦି ‘ତୁମେ ପଢୁଛ’ ଏପରି ‘ଦେଖାଯାଏ’ ତେବେ ତୁମେ ଅନ୍ୟ ଜାଗାରେ ମଗ୍ନ ନ ଥାଅ । ଏହି ଭାବନା କରିବା ସମୟରେ ତୁମେ ଅନ୍ୟତ୍ର ନଥିବା ଉଚିତ । ମୁଁ ଏକ କ୍ଷଣ ପାଇଁ ମଧ୍ଯ ଅନ୍ୟତ୍ର ଯାଏ ନାହିଁ । ସେହି ମାର୍ଗରେ ତୁମକୁ ବି ଆସିବାକୁ ପଡ଼ିବ ନା ? ଯେଉଁ ଜାଗାରେ ମୁଁ ଅଛି ସେଠାକୁ! ଏହି ଭାବନା କରିବାଦ୍ୱାରା ପୂର୍ଣ୍ଣ ହେବାକୁ ଲାଗିବ । ଭାବନା ତ କେବଳ ଏତିକି କରିବା ଯୋଗ୍ୟ ଅଟେ ।

ହଁ, ଯାହା ମନ-ବଚନ-କାୟାର ଏକତା ସହ ବୋଲାଯାଏ ତାହା ହେଉଛି ଭାବନା । ଏଣୁ ଏହା ଅବଶ୍ୟ କରିବ । ଏଣୁ ତୁମେ ଏହି ନଅ କଲମ ଅବଶ୍ୟ କରିବ । ଏହି ନଅ କଲମ ପୂରା ବୀତରାଗ ବିଜ୍ଞାନର ସାର ଅଟେ ! ଏବଂ ପ୍ରତିକ୍ରମଣ-ପ୍ରତ୍ୟାଖ୍ୟାନ ସବୁ ସେଥିରେ ସମାହିତ । ଏପରି ନଅ କଲମ କୌଣସି ଜାଗାରେ ବାହାରି ନଥିଲା । ଯେପରି ଏହି ବ୍ରହ୍ମଚର୍ଯ୍ୟର ପୁସ୍ତକ ବାହାରି ନଥିଲା, ସେପରି ଏହି ନଅ କଲମ ମଧ୍ୟ ବାହାରି ନଥିଲା । ଯଦି ଏହି ନଅ କଲମ ପଢ଼ିବା ଏବଂ ଭାବନା କରିବା ତେବେ ଦୁନିଆରେ କାହା ସହ ବୈର ରହିବ ନାହିଁ, ସମସ୍ତଙ୍କ ସହ ମୈତ୍ରୀ ହୋଇଯିବ । ଏହି ନଅ କଲମ ତ ସବୁ ଶାସ୍ତ୍ରର ସାର ଅଟେ ।

**- ଜୟ ସଚ୍ଚିଦାନନ୍ଦ**

## ମୂଳ ଗୁଜରାଟୀ ଶବ୍ଦର ସମାନାର୍ଥୀ ଶବ୍ଦ

| | |
|---|---|
| *ପ୍ରମାଣ* | : ମର୍ଯ୍ୟାଦା, ମାନ୍ୟତା, ଦୃଷ୍ଟିକୋଣ |
| ଦୁଭାଇବା | : ଆହତ କରିବା, ଭଗ୍ନ କରିବା |
| *ନିଶ୍ଚୟ* | : ସଙ୍କଳ୍ପ |
| *ଅନ୍ତରାୟ* | : ବାଧା, ବିଘ୍ନ |
| *ଡଂଖୀଲି* ବାଣୀ | : ଦଂଶିବା ପରି ବାଣୀ, ପିଡ଼ାଦାୟକ ବାଣୀ |
| *ଆଚାର* | : ଆଚରଣ |
| ନିବେଡ଼ା | : ସମାଧାନପୂର୍ବକ ଅନ୍ତ |
| ରାଗ୍-ଦ୍ୱେଷ | : ଆସକ୍ତି-ଘୃଣା |
| *ପୁଦ୍‌ଗଳ* | : ଯାହା ପୂରଣ ଏବଂ ଗଳନ ହୁଏ |
| ବୀତରାଗ | : ରାଗ୍-ଦ୍ୱେଷ ରହିତ |

# ନିଜ ଦୋଷ ଧୋଇବାର ସାଧନ-ପ୍ରତିକ୍ରମଣ

## କ୍ରମଣ-ଅତିକ୍ରମଣ-ପ୍ରତିକ୍ରମଣ

ସଂସାରରେ ଯାହା କିଛି ମଧ୍ୟ ହେଉଅଛି ତାହା କ୍ରମଣ ଅଟେ । ଯେପର୍ଯ୍ୟନ୍ତ ତାହା ସହଜ ରୂପେ ହେଉଥାଏ ସେପର୍ଯ୍ୟନ୍ତ କ୍ରମଣ ଅଟେ, କିନ୍ତୁ ଯଦି ଏକ୍ସେସ (ଅତ୍ୟଧିକ) ହୋଇଯାଏ, ତେବେ ତାହା ଅତିକ୍ରମଣ କୁହାଯାଏ । ଯାହା ପ୍ରତି ଅତିକ୍ରମଣ ହୋଇଯାଏ, ତା'ଠୁ ଯଦି ମୁକ୍ତି ଚାହୁଁଥାଅ ତେବେ ତାହାର ପ୍ରତିକ୍ରମଣ କରିବାକୁ ହିଁ ପଡ଼ିବ, ମାନେ ଧୋଇବାକୁ ପଡ଼ିବ, ତେବେଯାଇ ସଫା ହେବ । ପୂର୍ବ ଜନ୍ମରେ ଯେଉଁ ଭାବ କରିଥିଲ ଯେ, 'ଅମୁକ ବ୍ୟକ୍ତିକୁ ଚାରି ଚଟକଣା ଲଗେଇ ଦେବି ।' ସେଥିପାଇଁ ଏହି ଜନ୍ମରେ ଯେତେବେଳେ ତାହା ରୂପକରେ ଆସେ, ସେତେବେଳେ ଚାରି ଚଟକଣା ଲଗେଇ ଦିଆଯାଏ । ତାହାକୁ ଅତିକ୍ରମଣ ହେଲା କୁହାଯିବ, ଏଣୁ ତାହାର ପ୍ରତିକ୍ରମଣ କରିବାକୁ ପଡ଼ିବ । ସାମ୍ନାବାଲାର 'ଶୁଦ୍ଧାତ୍ମା'ଙ୍କୁ ସ୍ମରଣ କରି, ତାଙ୍କ ପାଖରେ ପ୍ରତିକ୍ରମଣ କରିବା ଉଚିତ ।

କୌଣସି ଖରାପ ଆଚରଣ ହେଲା, ତାହାକୁ ଅତିକ୍ରମଣ କୁହାଯାଏ । ଯେଉଁ ଖରାପ ଆଚରଣ ହୁଏ, ତାହା ତ' ଦାଗ ଅଟେ । ତାହା ମନ ଭିତରେ ଫୋଡ଼ି ହେଉଥାଏ । ତାହାକୁ ଧୋଇବା ପାଇଁ ପ୍ରତିକ୍ରମଣ କରିବାକୁ ପଡ଼ିବ । ଏହି ପ୍ରତିକ୍ରମଣ ଦ୍ୱାରା ତ' ସାମ୍ନାବାଲାର ମଧ୍ୟ ତୁମ ପ୍ରତି ଭାବ ବଦଳିଯାଏ, ନିଜର ଭାବ ଯଦି ଭଲ ଥିବ ତେବେ ସାମ୍ନାବ୍ୟକ୍ତିର ଭାବ ମଧ୍ୟ ଭଲ ହୋଇଯାଏ । କାରଣ ପ୍ରତିକ୍ରମଣରେ ତ ଏତେ ଶକ୍ତି ଅଛି ଯେ ବାଘ ମଧ୍ୟ କୁକୁର ଭଳି ହୋଇଯାଏ ! ପ୍ରତିକ୍ରମଣ କେତେବେଳେ କାମରେ ଆସେ ? ଯେତେବେଳେ କୌଣସି ଓଲଟା ପରିଣାମ ଆସିଯାଏ, ସେତେବେଳେ କାମରେ ଆସେ ।

## ପ୍ରତିକ୍ରମଣର ଯଥାର୍ଥ ଦୃଷ୍ଟି

ତା'ହେଲେ ପ୍ରତିକ୍ରମଣ ମାନେ କ'ଣ ? ପ୍ରତିକ୍ରମଣ ମାନେ ସାମ୍ନାବାଲା ଆମର ଯେଉଁ ଅପମାନ କରେ, ସେତେବେଳେ ଆମକୁ ବୁଝିନେବା ଉଚିତ ଯେ ଏହି ଅପମାନର ଦୋଷୀ କିଏ ? କରିବାବାଲା ଦୋଷୀ ନା ଭୋଗିବାବାଲା ଦୋଷୀ, ପ୍ରଥମେ ଆମକୁ ଏହି ନିଷ୍ପତ୍ତି ନେବା ଉଚିତ । ଅପମାନ କରିବାବାଲା ବିଲ୍‌କୁଲ ବି ଦୋଷୀ ହୋଇ ନଥାଏ । ସେ ନିମିତ୍ତ ଅଟେ । ଏବଂ ନିଜର ହିଁ କର୍ମର ଉଦୟ ଅନୁସାରେ ସେ ନିମିତ୍ତ ମିଳେ । ଅର୍ଥାତ ଏହା ନିଜର ହିଁ ଦୋଷ । ଏବେ ପ୍ରତିକ୍ରମଣ

ଏଥିପାଇଁ କରିବା ଉଚିତ ଯେ ସାମ୍ନାବାଲା ପ୍ରତି ଖରାପ ଭାବ ହେଲା । ତା' ପ୍ରତି ଅଯୋଗ୍ୟ ଅଟେ, ବଦମାସ ଅଟେ, ଏପରି ଯଦି ମନରେ ବିଚାର ଆସିଯାଇଥିବ ତେବେ ପ୍ରତିକ୍ରମଣ କରିବା ଉଚିତ । ଯଦି କେହି ଗାଳି ଦିଏ ତେବେ ତାହା ନିଜର ହିଁ ହିସାବ ଅଟେ, ସେ ବ୍ୟକ୍ତି ତ ନିମିତ୍ତ ଅଟେ । ପକେଟ ମାରିଦିଏ ତେବେ ମାରିବାବାଲା ନିମିତ୍ତ ଅଟେ ଏବଂ ହିସାବ ନିଜର ହିଁ ଅଟେ । ଏମାନେ ନିମିତ୍ତକୁ ହିଁ କାମୁଡ଼ିବା ପାଇଁ ଦୌଡ଼ନ୍ତି ଏବଂ ସେଥିପାଇଁ ଏସବୁ ଝଗଡ଼ା ଅଛି ।

ଦିନସାରା ଯେଉଁ ବ୍ୟବହାର କରୁଛେ ସେଥିରେ ଯେବେ କିଛି ଓଲଟା ହୋଇଯାଏ, ସେତେବେଳେ ଆମକୁ ଜଣାପଡ଼େ ଯେ ଏ ଭାଇ ସହିତ ଓଲଟା ବ୍ୟବହାର ହୋଇଗଲା, ଜଣାପଡ଼େ କି ନାହିଁ? ଆମେ ଯେଉଁ ବ୍ୟବହାର କରୁ, ତାହା ସବୁ କ୍ରମଣ ଅଟେ । କ୍ରମଣ ଅର୍ଥାତ ବ୍ୟବହାର । ଏବେ କାହା ସହିତ ଯଦି ଓଲଟା ହୋଇଗଲା, ତେବେ ଆମକୁ ଏପରି ଜଣାପଡ଼େ ଯେ ତା' ପ୍ରତି କଠୋର ଶବ୍ଦ ବାହାରିଗଲା ଅବା ବ୍ୟବହାର ଓଲଟା ହୋଇଗଲା, ଜଣା ପଡ଼େ ନା ନାହିଁ? ତେବେ ତାହାକୁ ଅତିକ୍ରମଣ କୁହାଯାଏ ।

ଅତିକ୍ରମଣ ଅର୍ଥାତ ଆମେ ଓଲଟା ଗଲେ । ସେତିକି ହିଁ ଫେରି ଆସିବା, ତାହାର ନାମ ପ୍ରତିକ୍ରମଣ ।

## ପ୍ରତିକ୍ରମଣ ବିଧି

ପ୍ରତ୍ୟକ୍ଷ ଦାଦା ଭଗବାନଙ୍କ ସାକ୍ଷୀରେ, ଦେହଧାରୀ ........ (ଯାହା ପ୍ରତି ଦୋଷ ହୋଇଥିବ, ସେ ବ୍ୟକ୍ତିର ନାମ)ର ମନ-ବଚନ-କାୟାର ଯୋଗ, ଭାବକର୍ମ-ଦ୍ରବ୍ୟକର୍ମ-ନୋକର୍ମରୁ ଭିନ୍ନ, ଏପରି ହେ ଶୁଦ୍ଧାତ୍ମା ଭଗବାନ! ଆପଣଙ୍କ ସାକ୍ଷୀରେ, ଆଜି ଦିନ ପର୍ଯ୍ୟନ୍ତ ମୋ ଦ୍ୱାରା ଯେଉଁ ଯେଉଁ ★★ ଦୋଷ ହୋଇଛି, ସେ ସବୁ ପାଇଁ ମୁଁ କ୍ଷମା ମାଗୁଛି, ହୃଦୟପୂର୍ବକ ବହୁତ ପଶ୍ଚାତାପ କରୁଛି । ମୋତେ କ୍ଷମା କରନ୍ତୁ ଏବଂ ପୁଣି ଏପରି ଦୋଷ କେବେ ମଧ୍ୟ କରିବି ନାହିଁ, ଏପରି ଦୃଢ଼ *ନିଶ୍ଚୟ* କରୁଛି । ସେଥିପାଇଁ ମୋତେ ପରମ ଶକ୍ତି ଦିଅନ୍ତୁ ।

★★ କ୍ରୋଧ-ମାନ-ମାୟା-ଲୋଭ, ବିଷୟ-ବିକାର, କଷାୟ ଆଦି ଦ୍ୱାରା ସେହି ବ୍ୟକ୍ତିକୁ ଯାହା ବି ଦୁଃଖ ପହଞ୍ଚାଇ ଥିବ, ସେ ସମସ୍ତ ଦୋଷ ମନରେ ସ୍ମରଣ କରନ୍ତୁ ।

  

# ଦାଦା ଭଗବାନ ଫାଉଣ୍ଡେସନ୍ ଦ୍ୱାରା ପ୍ରକାଶିତ ପୁସ୍ତକ

## ହିନ୍ଦୀ

୧. ଜ୍ଞାନୀପୁରୁଷଙ୍କ ପରିଚୟ
୨. ସର୍ବ ଦୁଃଖରୁ ମୁକ୍ତି
୩. କର୍ମର ସିଦ୍ଧାନ୍ତ
୪. ଆତ୍ମବୋଧ
୫. ବର୍ତ୍ତମାନ ତୀର୍ଥଙ୍କର ଶ୍ରୀ ସୀମନ୍ଧର ସ୍ୱାମୀ
୬. ଦାଦା ଭଗବାନ କିଏ ?
୭. ଲକ୍ଷ୍ମୀ ର ବ୍ୟବହାର
୮. ଅନ୍ତଃକରଣ ର ସ୍ୱରୂପ
୯. ଜଗତ କର୍ତ୍ତା କିଏ ?
୧୦. ପ୍ରେମ
୧୧. ସମଝ ରୁ ପ୍ରାପ୍ତ ବ୍ରହ୍ମଚର୍ଯ୍ୟ (ସଂ.)
୧୨. ଦାନ
୧୩. ନିଜଦୋଷ ଦର୍ଶନ ରୁ... ନିର୍ଦ୍ଦୋଷ
୧୪. ପତି-ପତ୍ନୀଙ୍କ ଦିବ୍ୟ ବ୍ୟବହାର
୧୫. କ୍ଲେଶ ରହିତ ଜୀବନ
୧୬. ଗୁରୁ-ଶିଷ୍ୟ
୧୭. ଅହିଂସା
୧୮. ସତ୍ୟ-ଅସତ୍ୟ ର ରହସ୍ୟ
୧୯. ଚମତ୍କାର
୨୦. ପାପ-ପୁଣ୍ୟ
୨୧. ବାଣୀ, ବ୍ୟବହାରରେ...
୨୨. କର୍ମର ବିଜ୍ଞାନ
୨୩. ସହଜତା
୨୪. ଆପ୍ତବାଣୀ - ୧
୨୫. ଆପ୍ତବାଣୀ - ୨
୨୬. ଆପ୍ତବାଣୀ - ୩
୨୭. ଆପ୍ତବାଣୀ - ୪
୨୮. ଆପ୍ତବାଣୀ - ୫
୨୯. ଆପ୍ତବାଣୀ - ୬
୩୦. ଆପ୍ତବାଣୀ - ୭
୩୧. ଆପ୍ତବାଣୀ - ୮
୩୨. ଆପ୍ତବାଣୀ - ୯
୩୩. ଆପ୍ତବାଣୀ - ୧୩ (ପୂର୍ବାର୍ଦ୍ଧ ଓ ଉତ୍ତରାର୍ଦ୍ଧ)
୩୪. ଆପ୍ତବାଣୀ - ୧୪ (ଭାଗ-୧)
୩୫. ସମଝ ରୁ ପ୍ରାପ୍ତ ବ୍ରହ୍ମଚର୍ଯ୍ୟ (ପୂର୍ବାର୍ଦ୍ଧ ଓ ଉତ୍ତରାର୍ଦ୍ଧ)
୩୬. ଜ୍ଞାନୀ ପୁରୁଷ

**ଓଡ଼ିଆ ପୁସ୍ତକ :**

୧. ଆତ୍ମସାକ୍ଷାତ୍କାର
୨. ଘର୍ଷଣ ଟାଳନ୍ତୁ
୩. ମୁଁ କିଏ ?
୪. ଏଡ଼ଜଷ୍ଟ ଏଭ୍ରିହ୍ୱେୟାର
୫. ଚିନ୍ତା
୬. ମାନବ ଧର୍ମ
୭. କ୍ରୋଧ
୮. ଯାହା ହେଲା ତାହା ନ୍ୟାୟ
୯. ମୃତ୍ୟୁ ସମୟରେ, ପୂର୍ବରୁ ଏବଂ ପରେ
୧୦. ଯିଏ ଭୋଗେ ତା'ର ଭୁଲ
୧୧. ସେବା ପରୋପକାର
୧୨. ମାତା-ପିତା ଏବଂ ପିଲାଙ୍କ ବ୍ୟବହାର
୧୩. ପ୍ରତିକ୍ରମଣ
୧୪. ଭାବନା ସୁଧାରେ ଜନ୍ମୋଜନ୍ମ
୧୫. ତ୍ରିମନ୍ତ୍ର

**★ ଦାଦା ଭଗବାନ ଫାଉଣ୍ଡେଶନ ଦ୍ୱାରା ଗୁଜରାଟୀ ଭାଷାରେ ବି ଅନେକ ପୁସ୍ତକ ପ୍ରକାଶିତ ହୋଇଛି । ୱେବସାଇଟ୍ www.dadabhagwan.org ରେ ମଧ୍ୟ ଆପଣ ଏ ସମସ୍ତ ପୁସ୍ତକ ପ୍ରାପ୍ତ କରିପାରିବେ ।**

**★ ଦାଦା ଭଗବାନ ଫାଉଣ୍ଡେଶନ ଦ୍ୱାରା ପ୍ରତ୍ୟେକ ମାସ ହିନ୍ଦୀ, ଗୁଜରାଟୀ ତଥା ଇଂରାଜୀ ଭାଷାରେ "ଦାଦାବାଣୀ" ମାଗାଜିନ୍ ପ୍ରକାଶିତ ହେଉଛି ।**

**★ ଉପରୋକ୍ତ ଓଡ଼ିଆ ପୁସ୍ତକ ହିନ୍ଦୀ ଭାଷାରେ ମଧ୍ୟ ଉପଲବ୍ଧ ।**

# ପ୍ରାପ୍ତିସ୍ଥାନ

## ଦାଦା ଭଗବାନ ପରିବାର

**ଅଡ଼ାଲଜ** : **ତ୍ରିମନ୍ଦିର**, ସୀମନ୍ଧର ସିଟୀ, ଅହମଦାବାଦ-କଲୋଲ ହାଇୱେ, ପୋଷ୍ଟ-ଅଡ଼ାଲଜ, ଜିଲ୍ଲା-ଗାନ୍ଧୀନଗର, ଗୁଜରାଟ-୩୮୨୪୨୧,ଫୋନ-(୦୭୯)୩୯୮୩୦୧୦୦

**ରାଜକୋଟ** : **ତ୍ରିମନ୍ଦିର**, ଅହମଦାବାଦ-ରାଜକୋଟ ହାଇୱେ, ତରଘଡ଼ିୟା ଚୋକଡ଼ି(ସର୍କଲ), ପୋଷ୍ଟ-ମାଲିୟାସଣ,ଜିଲ୍ଲା-ରାଜକୋଟ, ଫୋନ-୯୯୨୪୩୪୩୪୭୮

**ଭୁଜ୍** : **ତ୍ରିମନ୍ଦିର**, ହିଲ୍ ଗାର୍ଡେନ ପଛ,ଏୟାରପୋର୍ଟ ରୋଡ଼.ଫୋନ-(୦୨୮୩୨) ୨୯୦୧୨୩

**ଅଞ୍ଜାର** : **ତ୍ରିମନ୍ଦିର**, ଅଞ୍ଜାର-ମୁନ୍ଦ୍ର ରୋଡ,ସୀନୋଗ୍ରା ପାଟୀୟା ପାଖ,ସୀନୋଗ୍ରା ଗାଁ, ତା.-ଅଞ୍ଜାର,ଫୋନ-୯୯୨୪୩୪୬୬୨୨

**ମୋର୍‌ବୀ** : **ତ୍ରିମନ୍ଦିର**, ମୋରବୀ-ନବଲଖି ହାଇୱେ, ପୋ:ଜୟପୁର, ଜିଲ୍ଲା-ରାଜକୋଟ, ଫୋନ-(୦୨୮୨୨)୨୯୭୦୯୭

**ସୁରେନ୍ଦ୍ରନଗର** : **ତ୍ରିମନ୍ଦିର**, ସୁରେନ୍ଦ୍ରନଗର-ରାଜକୋଟ ହାଇୱେ, ଲୋକବିଦ୍ୟାଳୟ ପାଖ, ମୂଳି ରୋଡ, ୯୭୩୭୦୪୮୩୨୨

**ଅମ୍‌ରେଲୀ** : **ତ୍ରିମନ୍ଦିର**, ଲିଲିୟା ରୋଡ, ବାଇପାସ ଚୋକଡି, ଖାରାବାଡି, ୯୯୨୪୩୪୪୪୬୦

**ଗୋଧ୍ରା** : **ତ୍ରିମନ୍ଦିର**, ଭାମେୟା ଗାଁ, ଏଫ ସି ଆଇ ଗୋଡାଉନ୍ ସାମନା, ଗୋଧ୍ରା । (ଜି-ପଞ୍ଚମହାଲ) ଫୋନ-(୦୨୬୭୨) ୨୬୨୩୦୦

**ବଡ଼ୋଦରା** : ବାବରୀୟା କଲେଜ ପାଖ,ବଡ଼ୋଦରା-ସୁରଟ ହାଇୱେ,NH-8 , ବରଣାମା ଗାଁ. ଫୋନ-୯୫୭୪୦୦୧୫୫୭

**ଅହମଦାବାଦ** : **ଦାଦା ଦର୍ଶନ**, ୫, ମମତା ପାର୍କ ସୋସାଇଟୀ, ନବଗୁଜରାଟ କୋଲେଜ ପାଖ, ଉସ୍ମାନପୁର,ଅହମଦାବାଦ-୩୮୦୦୧୪,ଫୋନ-(୦୭୯) ୨୭୫୪୦୪୦୮

**ବଡ଼ୋଦରା** : ଦାଦା ମନ୍ଦିର, ୧୭, ମାମା କି ପୋଲ-ମୁହଲ୍ଲା, ରାବପୁରା ପୋଲିସ ଷ୍ଟେସନ ପାଖ, ସଲାଟୱାଡ଼ା, ବଡ଼ୋଦରା,ଫୋନ-୯୯୨୪୩୪୩୩୩୫

---

**ମୁମ୍ବାଇ** : ୯୩୨୩୫୨୮୯୦୧
**କୋଲକତା** : ୯୮୩୦୦୯୩୨୩୦
**ଜୟପୁର** : ୯୩୫୧୪୦୮୨୮୫
**ଇନ୍ଦୋର** : ୯୦୩୯୯୩୬୧୭୩
**ରାୟପୁର** : ୯୩୨୯୬୪୪୪୩୩
**ପାଟନା** : ୭୩୫୨୭୨୩୧୩୨
**ବାଙ୍ଗାଲୋର** : ୯୫୯୦୯୭୯୦୯୯
**ପୁନେ** : ୯୪୨୨୬୬୦୪୯୭
**ଓଡିଶା** : ୮୭୬୩୦୭୩୧୧୧
**ଦିଲ୍ଲୀ** : ୯୮୧୦୦୯୮୫୬୪
**ଚେନ୍ନାଇ** : ୯୩୮୦୧୫୯୯୫୭
**ଭୋପାଲ୍** : ୯୪୨୫୦୨୪୪୦୫
**ଜବଲପୁର** : ୯୪୨୫୧୬୦୪୨୮
**ଭିଲାଇ** : ୯୮୨୭୪୮୧୩୩୬
**ଅମରାବତୀ** : ୯୪୨୨୯୧୫୦୬୪
**ହାଇଦ୍ରାବାଦ** : ୯୯୮୯୮୭୭୭୮୬
**ଜଲନ୍ଧର** : ୯୮୧୪୦୬୩୦୪୩

---

**U.S.A.: DBVI, Tel . :**+1 877-505-DADA (3232)
**Email :** info@us.dadabhagwan.org

**U.K. :** +44 330-111-DADA (3232)
**Kenya :** +254 722 722 063
**Australia :** +61 421127947
**UAE** : +971 557316937
**Singapore** : +65 81129229
**New Zealand** : +64 21 0376434

**Website : www.dadabhagwan.org**
**Email : info@dadabhagwan.org**

## ସାରାଂଶ, ସବୁ ଶାସ୍ତ୍ରର !

କ୍ରମିକ ମାର୍ଗର ଏତେ ବଡ଼ ଶାସ୍ତ୍ର ପଢ଼ିବା ଅଥବା କେବଳ ଏହି ନଅ କଲମ ବୋଲିବା ତେବେ ମଧ୍ୟ ବହୁତ ହୋଇଗଲା ! ନଅ କଲମରେ ଏତେ ଗଜବ ଶକ୍ତି ଅଛି ! ଏହି ନଅ କଲମ କୌଣସି ଶାସ୍ତ୍ରରେ ନାହିଁ କିନ୍ତୁ ମୁଁ ଯାହାର ପାଳନ କରୁଛି ଏବଂ ଯାହା ସର୍ବଦା ମୋର ଅମଳରେ ହିଁ ଅଛି, ତାହା ତୁମକୁ କରିବା ପାଇଁ ଦେଉଛି । ଏଣୁ ତୁମେ ଏହି ନଅ କଲମ ଅବଶ୍ୟ କରିବ । ଏହି ନଅ କଲମ ସମସ୍ତ ବୀତରାଗ ବିଜ୍ଞାନର ସାରାଂଶ ଅଟେ !

-ଦାଦାଶ୍ରୀ



dadabhagwan.org




Printed in India

Price ₹ 20